# ଭୂମିକା ।



ଲେଖକ କେନ୍ଦୁଝର ଷ୍ଟେଟରେ କାର୍ଯ୍ୟ କଲାବେଳେ ଭୂୟାଁ ପୀଢ଼ ଅର୍ଥାତ୍ ଭୂୟାଁ ଗ୍ରାମମାନଙ୍କରେ ବୁଲି ଉପଯୁକ୍ତ ସ୍ଥାନମାନଙ୍କରେ ସ୍କୁଲ ବସାଇବାକୁ ଆଦିଷ୍ଟ ହୋଇଥିଲେ । ସେହି ସମୟରେ ସେ ଭୂୟାଁମାନଙ୍କର ଅଦ୍ଭୁତ ବ୍ୟବହାର ଦେଖି ସେ ସମ୍ବନ୍ଧରେ କିଛି ଲେଖିବାକୁ ଇଚ୍ଛା କରି ତତ୍କାଳୀନ ଷ୍ଟେଟ ସୁପରିଣ୍ଟେଣ୍ଡେଣ୍ଟ ଡି. ଏ. ମ୍ୟାକ୍‌ମିଲନ ମହୋଦୟଙ୍କ ନିକଟରେ ନିଜର ଇଚ୍ଛା ବ୍ୟକ୍ତ କରିବାରୁ ସେ ମହାଶୟ ପ୍ରୀତ ହୋଇ ଭୂୟାଁମାନଙ୍କ ବିଷୟରେ ଯେଉଁ ବିବରଣମାନ ସଂଗ୍ରହ କରି ଇଂରାଜୀ ଭାଷାରେ ଲେଖି ଟାଇପ କରାଇ ରଖିଥିଲେ, ତହିଁରୁ ଗୋଟିଏ କପି ଲେଖକ ହସ୍ତରେ ଦେଇଥିଲେ । ଲେଖକ ପ୍ରାପ୍ତ ଅଧିକାଂଶ ବିଷୟ ଉକ୍ତ ଲେଖାରୁ ଗ୍ରହଣ କରି ଏବଂ ତିନି ବର୍ଷ କାଳ ଭୂୟାଁ ଗ୍ରାମମାନଙ୍କରେ ବୁଲି ସେମାନଙ୍କ ସମ୍ବନ୍ଧରେ ଯାହା ସଂଗ୍ରହ କରି ପାରିଥିଲେ, ସେ ସବୁ ୧୯୧୬-୧୭ ସାଲ "ଉତ୍କଳ-ସାହିତ୍ୟ"ରେ ଚାରିଗୋଟି ସଂଖ୍ୟାରେ କ୍ରମଶଃ ପ୍ରକାଶ କରିଥିଲେ । ଉକ୍ତ ଡି. ଏ. ମ୍ୟାକ୍‌ମିଲନ ସାହେବ ଭୂୟାଁମାନଙ୍କର ଧାଙ୍ଗଡ଼ା ନାଚ, ଅଦ୍ଭୁତ ବ୍ୟବହାର, ସାମାଜିକ ଅବସ୍ଥା ଏବଂ ଗ୍ରାମାଦିର ଦୃଶ୍ୟ ଇତ୍ୟାଦି ବିଷୟରେ ଫଟୋ ଦେଇ ତାହା ପୁସ୍ତକାକାରରେ ଛପାଇ ଦେବାକୁ ପ୍ରତିଶ୍ରୁତ ହୋଇଥିଲେ, ମାତ୍ର ଦୁଃଖର ବିଷୟ, ସେ ମହୋଦୟଙ୍କ ଅକାଳ

ମୃତ୍ୟୁ ଯୋଗେ ତାହା ଏପର୍ଯ୍ୟନ୍ତ ପୁସ୍ତକାକାରରେ ବାହାରି ପାରି ନ ଥିଲା । ଲେଖକ ଏଥି ମଧ୍ୟରେ ବହୁ ଚେଷ୍ଟା କରି ସେ ସବୁ ସନ୍ଧୋ ପାଇ ପାରିଲା ନାହିଁ, ଯଦି ଭବିଷ୍ୟତରେ କିଛି ମିଳେ, ତାହା ଦ୍ୱିତୀୟ ସଂସ୍କରଣରେ ଦେବାକୁ ଅଶା ରଖି ବର୍ତ୍ତମାନ ପ୍ରଥମ ସଂସ୍କରଣ ପ୍ରକାଶ କଲା ।

୨୨।୭।୧୯୨୫ } ଶ୍ରୀ କେଶବଚନ୍ଦ୍ର ମିଶ୍ର
ସ୍କୁଲ ସ. ଇ. ଖୋର୍ଦ୍ଧା ।

# ଭୂୟାଁ ଜାତି ।



ଓଡ଼ିଶାର ଉତ୍ତର-ପଶ୍ଚିମ ସୀମାରେ (ଏକପ୍ରାନ୍ତରେ) ଗଡ଼ଜାତ ମହାଲ ଅନ୍ତର୍ଗତ କେଉଁଝର କଟକ ଅବସ୍ଥିତ । ଏହି କଟକର ଉତ୍ତର-ପଶ୍ଚିମ ସୀମାରେ ଅତି ପାର୍ବତ୍ୟ ଅଂଶରେ ଏକ ଅସଭ୍ୟ ଜାତି ବାସ କରୁଅଛନ୍ତି । ସେମାନେ ନିଜକୁ ଭୂମିପୁତ୍ର ବୋଲି କହନ୍ତି । ସେମାନେ ଯେଉଁ ପ୍ରଦେଶରେ ବାସ କରନ୍ତି, ସେଥିରେ ସେମାନଙ୍କର ସମ୍ପୂର୍ଣ୍ଣ ଅଧିକାର ଏବଂ ତାହା ସେମାନେ ଆପଣା ଇଚ୍ଛାନୁସାରେ ବ୍ୟବହାର କରି ପାରନ୍ତି । ଏ ବିଷୟରେ ସେମାନଙ୍କର ଦୃଢ଼ ବିଶ୍ୱାସ ଅଛି । ସେମାନଙ୍କ ଆକୃତି ଓ ଗାତ୍ରଚର୍ମ ସେମାନଙ୍କ ଚତୁର୍ଦ୍ଦିଗରେ ବାସ କରୁଥିବା ଅନ୍ୟାନ୍ୟ ହିନ୍ଦୁଜାତି ଅପେକ୍ଷା ପୃଥକ୍ ଓ ଅଧିକ କୃଷ୍ଣବର୍ଣ୍ଣ । ଭୂୟାଁମାନେ ଓଡ଼ିଶାର ଦ୍ୱିତୀୟ ଅସଭ୍ୟଜାତି । ସେମାନଙ୍କ ନିକଟରେ ବାସ କରୁଥିବା ବିଭିନ୍ନ ଜାତିମାନଙ୍କ ସହ ସଂସର୍ଗୀ ହୋଇ ପୃଥକ୍ ପୃଥକ୍ ଆଚାର ବ୍ୟବହାରଦ୍ୱାରା ସେମାନେ ପୃଥକ୍ ପୃଥକ୍ ଶ୍ରେଣୀରେ ବିଭକ୍ତ ହୋଇଅଛନ୍ତି । ଯେଉଁମାନେ ପ୍ରକୃତ ଭୂୟାଁ ବୋଲି ଦାବି କରନ୍ତି, ସେମାନଙ୍କ ମଧ୍ୟରେ ସ୍ୱାଭାବିକ ସୃଷ୍ଟିଗୋଷ୍ଠି ଶ୍ରେଣୀ ଲକ୍ଷିତ ହୁଏ । ଏହି ଶ୍ରେଣୀଗୁଡିକ କାଳକ୍ରମେ କେତେକ କ୍ଷୁଦ୍ର ଶାଖାଶ୍ରେଣୀରେ ବିଭକ୍ତ ହୋଇଅଛି, ମାତ୍ର ଏହା ଏଠାରେ ବିଶଦ ଯେ ଉଲ୍ଲେଖ କରିବା ଆବଶ୍ୟକ ନାହିଁ । ସେମାନଙ୍କ

ମଣ୍ଡ୍ ଦାୟୁ ଦେଶଭୂୟାଁ ନାମରେ ପରିଚିତ, ସେମାନେ ଅନ୍ୟାନ୍ୟ ମଣ୍ଡ୍ ଦାୟୁ ଭୂୟାଁମାନଙ୍କଠାରୁ ଶ୍ରେଷ୍ଠ ବୋଲି କହନ୍ତି । ରାଜ କୋଲି ଭୂୟାଁମାନେ ଉପସ୍ତୀଗର୍ଭଜାତ ରାଜବଂଶ ବୋଲି ଅନୁମିତ ହୁଅନ୍ତି । ଏମାନଙ୍କ ବିଷୟ ପରେ ଉଲ୍ଲେଖ କରାଯିବ । ଅନ୍ୟ ଦୁଇ ଶ୍ରେଣୀ ରାଜୁଆଲି ଏବଂ ପାବାନ ନାମରେ ପରିଚିତ, ଏମାନଙ୍କ ସଂଖ୍ୟା ଅପର ଦୁଇ ଶ୍ରେଣୀ ଅପେକ୍ଷା ଅଳ୍ପ । ଏମାନେ ହିନ୍ଦୁମାନଙ୍କର ଅନେକ ରୀତି ନୀତି ଅନୁସରଣ କରି ଗୃହ କାର୍ଯ୍ୟରେ ଲିପ୍ତ ହେଉଅଛନ୍ତି ଏବଂ ଦେଶ ଭୂୟାଁମାନଙ୍କଠାରୁ ନିଜକୁ ଅଧିକ ଉନ୍ନତ ମନେ କରନ୍ତି ।

ବର୍ତ୍ତମାନ ଦେଶ ଭୂୟାଁମାନଙ୍କ ବିଷୟରେ କେତେକ କଥା ଲେଖା ଯାଉଅଛି । ଭୂୟାଁମାନେ କେବଳ ଓଡ଼ିଶାର ଦ୍ୱିତୀୟ ଅସଭ୍ୟ ଜାତି ନୁହନ୍ତି । ସେମାନେ ଅନ୍ୟାନ୍ୟ ପାର୍ବତୀୟ ଜାତିମାନଙ୍କଠାରୁ ଅଧିକ କ୍ଷମତାଶାଳୀ ଅଟନ୍ତି ଏବଂ କେଉଁଝରରେ ନିରୂପିତ ସମୟମାନଙ୍କରେ ପ୍ରଭୁତ୍ୱ ଶକ୍ତି ପ୍ରକାଶ କରିଅଛନ୍ତି । ଏ ଜିଲ୍ଲାରେ ଅନେକ ଅନାର୍ଯ୍ୟ ବାସ କରନ୍ତି । ମାତ୍ର ସେମାନେ ପ୍ରକୃତ ପାର୍ବତୀୟ ଜାତି ବୋଲି ବୋଧ ହୁଏ ନାହିଁ । କାରଣ ସେମାନେ ସେମାନଙ୍କ ପୂର୍ବ ଆଚାର, ବ୍ୟବହାର ଛାଡ଼ି ନିଜ ରୁଚି ଅନୁଯାୟୀ ହିନ୍ଦୁଧର୍ମର କେତେକ ନିୟମ ପରିବର୍ତ୍ତନପୂର୍ବକ ହିନ୍ଦୁ ରୀତି, ନୀତି ଅନୁସରଣ କରି ମିଶି ଯାଇଅଛନ୍ତି । କେବଳ ସେମାନଙ୍କ ପୂର୍ବପୁରୁଷମାନଙ୍କର ଦେହର ରଙ୍ଗ ଓ କେତେକ ଢଙ୍ଗ ଏମାନଙ୍କଠାରେ ଥିବାର ଦେଖାଯାଏ । ପ୍ରକୃତରେ ପାର୍ବତୀୟ ଜାତିମାନଙ୍କ ତେଜ ଏମାନଙ୍କଠାରେ ଦୃଷ୍ଟିଗୋଚର ହୁଏ ନାହିଁ । ପାହାଡ଼ିଆ ଭୂୟାଁମାନେ ବାହୁଙ୍ଗି ଓ ଅନ୍ୟାନ୍ୟ-

ମାନେ ଜାଣ୍ତି ଅପଣା ଅପଣାର ସ୍ୱନ୍ତକ ବୋଲି ଲେଖାନ୍ତି, ମଧ୍ୟତ୍ ଏହି ସନ୍ତକକୁ ସେମାନେ ପର୍ବପର୍ବାଣୀରେ ଦେବତାରୂପେ ପୂଜା କରନ୍ତି ।

ଭୂୟାଁମାନେ ପ୍ରଥମେ ସିଂହଭୂମିର ଦକ୍ଷିଣ-ପଶ୍ଚିମ ସୀମାରୁ କ୍ରମଶଃ ଆସି ଉତ୍ତରରେ ପାଲଲହଡ଼ା, ତାଳଚେର ଓ ଢେଙ୍କାନାଳ ପର୍ଯ୍ୟନ୍ତ ଉପନିବେଶ ସ୍ଥାପନ କଲେ । କାଳକ୍ରମେ ପଶ୍ଚିମରେ ବଣେଇ, ବାମଣ୍ଡା, ସିଂହଭୂମିର ଓ ମଧ୍ୟପ୍ରଦେଶର କେତେକ ପାର୍ବତ୍ୟ ପ୍ରଦେଶରେ ଉପନିବେଶ ବିସ୍ତାର କଲେ ଓ ପୂର୍ବଦିଗରେ କେନ୍ଦୁଝରର ପାର୍ବତ୍ୟ ପ୍ରଦେଶର ପାଦଦେଶ ପର୍ଯ୍ୟନ୍ତ ଅଧିକାର କଲେ । ଭୂୟାଁମାନଙ୍କର ବର୍ତ୍ତମାନ ବାସଭୂମିର ପରିମାଣ ୧୬୦୦ ବର୍ଗ ମାଇଲ, ମାତ୍ର ସେମାନଙ୍କର ଆଦି ବାସସ୍ଥଳୀର ପରିମାଣ ୬୫୫ ବର୍ଗ ମାଇଲ । ଏହି ୬୫୦ ବର୍ଗ ମାଇଲ ସ୍ଥାନ ପାହାଡ଼ିଆ ଭୂୟାଁମାନଙ୍କର ବାସସ୍ଥାନ । ଦେଶି ଭୂୟାଁମାନେ ସମସ୍ତ ପାର୍ବତ୍ୟ ପ୍ରଦେଶରେ ବାସ କରନ୍ତି । ମାତ୍ର ପର୍ବତର ପାଦଦେଶରେ ରାଜକୋଲୀ, ରାଉତାଳୀ ଓ ପାବନ ଶ୍ରେଣୀର ଭୂୟାଁମାନେ ବାସ କରିବାର ଦେଖାଯାଏ ।

କେନ୍ଦୁଝର ଭୂୟାଁମାନଙ୍କର ଆଦି ବାସସ୍ଥାନ । କାଳକ୍ରମେ ସେମାନଙ୍କର ବଂଶବୃଦ୍ଧି ହେବାରୁ ସେମାନଙ୍କ ମଧ୍ୟରୁ କେତେକ ନିକଟବର୍ତ୍ତୀ ଜିଲ୍ଲାମାନଙ୍କୁ ଯାଇ ବାସ କଲେ । ମାତ୍ର ଅନ୍ୟ ଜିଲ୍ଲାରେ ବାସ କରୁଥିବା ଭୂୟାଁମାନେ ସେମାନଙ୍କ ପୈତୃକ ସ୍ୱଭାବ ଛାଡ଼ିବାକୁ ବାଧ୍ୟ ହେଲେ ।

ଭୂୟାଁମାନେ ମୟୂରଭଞ୍ଜରୁ କେଉଁଝରକୁ ପୃଥକ୍ କରିବାର କିମ୍ବଦନ୍ତୀ ଅଛି । ପ୍ରାୟ ଏକସହସ୍ର ବର୍ଷ ପୂର୍ବେ ଭୂୟାଁମାନେ ବମ୍ଭ-

ଦୃଢ ବିପତ୍ସଙ୍କୁଳ ଅରଣ୍ୟ ଅତିକ୍ରମ କରି ମୟୂରଭଞ୍ଜ ରାଜାଙ୍କ ନିକଟକୁ ସମ୍ମାନ ଦର୍ଶାଇବା ଓ କର ଦେବାପାଇଁ ଯାଉଥିଲେ । ଏହି ସାମୟିକ ପ୍ରୟୋଜନରେ ଯେଉଁମାନେ ପଠାଯାଉଥିଲେ, ସେମାନେ ପ୍ରାୟ ଫେରି ଆସି ପାରୁ ନ ଥିଲେ । କେହି ହିଂସ୍ରଜନ୍ତୁମାନଙ୍କଦ୍ୱାରା ନିହତ ହେଉଥିଲେ, କେହି ବା ରୋଗଦ୍ୱାରା ଆକ୍ରାନ୍ତ ହୋଇ ପଥରେ ମୃତ୍ୟୁମୁଖରେ ପତିତ ହେଉଥିଲେ । ଏହି କାରଣରୁ ସେମାନଙ୍କର ନିଜର ଜଣେ ରାଜା କରିବାର ସ୍ଥିର କରି ତତ୍କାଳୀନ ନରପତିଙ୍କର ଗୋଟିଏ ପୁତ୍ରକୁ ଚୋରାଇ ଆଣି ଆପଣା ବାସସ୍ଥଳୀରେ ରାଜା ବୋଲି ଘୋଷଣା କଲେ । ସେ ସମୟରେ ଏମାନେ ବାସ କରୁଥିବା ସ୍ଥଳକୁ ବିଦେଶୀ ଲୋକ ଆସିବା ସହଜସାଧ୍ୟ ନ ଥିଲା । ଆଉ ମଧ୍ୟ ସେହି ସମୟରେ ମୟୂରଭଞ୍ଜ ରାଜପରିବାର ମଧ୍ୟରେ ଗୃହବିବାଦ ଚାଲୁଥିବାରୁ ସେମାନଙ୍କ ପରିବାରବର୍ଗରୁ ଅନେକେ ଭୂୟାଁମାନଙ୍କର ଉକ୍ତ କାର୍ଯ୍ୟରେ ସାହାଯ୍ୟ ଦେଇଥିଲେ । ଗଉଡ଼ ଓ ଅନ୍ୟାନ୍ୟ କେତେକ ଜାତି ଉକ୍ତ ରାଜାଙ୍କର ଆବଶ୍ୟକ କାର୍ଯ୍ୟ ନିର୍ବାହ କରିବାପାଇଁ ଅନ୍ୟାନ୍ୟ ଜିଲ୍ଲାରୁ ଆନୀତ ହେଲେ ମଧ୍ୟ ସେ ରାଜାଙ୍କର ଖାଦ୍ୟ ପୃଥକରୂପେ ଅତି ସାବଧାନତା ସହକାରେ ପାକ କରାଯାଉଥିଲା । ଏପରି ପ୍ରବାଦ ଅଛି ଯେ, ଭୂୟାଁମାନେ ତାଙ୍କୁ ଏପରି ସମ୍ମାନ କରୁଥିଲେ ଯେ ସେମାନଙ୍କ ମଧ୍ୟରୁ କେହି ତାହାଙ୍କ ପାଇଁ ପ୍ରସ୍ତୁତ ହୋଇଥିବା ଖାଦ୍ୟ ସ୍ପର୍ଶ କରୁ ନ ଥିଲେ । ଛୁଇଁଲେ ଅଶୁଚି ହେବାର ଭୟ ସେମାନଙ୍କର ଥିଲା ଏବଂ ଏହି କାରଣରୁ ଯେଉଁ ପାତ୍ରରେ ରନ୍ଧନ କାର୍ଯ୍ୟ ହେଉଥିଲା, ତାହା ଖାଲି ହେବା ମାତ୍ରକେ ଜଣେ ପ୍ରଧାନ ଭୂୟାଁ

କାଣ୍ଡ ବନ୍ଧ ସେ ପାତ୍ରକୁ ଭାଙ୍ଗି ଦେଇଥିଲା । ଏହି ମୃତ୍ତିକା ପାତ୍ର ଭାଙ୍ଗିବା କାର୍ଯ୍ୟ ଆଜି ପର୍ଯ୍ୟନ୍ତ ଅବଶ୍ୟକ ବିବେଚିତ ହୋଇଅଛି । ବର୍ତ୍ତମାନ କାଣ୍ଡଦ୍ୱାରା ଭାଙ୍ଗିବା ପ୍ରଥା ଉଠି ଯାଇଥିଲେହେଁ ଏହି କାର୍ଯ୍ୟ ରାଜାଙ୍କ ପାଖଲୋକଙ୍କ ଦ୍ୱାରା ସାଧିତ ହେଉଅଛି । ରାଜପୁତ୍ର ବୟଃପ୍ରାପ୍ତ ହେବାରୁ ତାଙ୍କ ସକାଶେ ଗୋଟିଏ ଦୁର୍ଗ ନିର୍ମାଣ କରିବା ପାଇଁ ତାହାଙ୍କର ଭୂୟାଁ ଅଭିଭାବକମାନେ ଗୋଟିଏ ସୁବିଧାଜନକ ସ୍ଥାନ ନିରୂପଣ କରିବାକୁ ମନସ୍ଥ କଲେ । ଉକ୍ତ ବାସଭୂମି ନିରୂପଣାର୍ଥ ସ୍ଥାନ ଖୋଜୁ ଖୋଜୁ ସେମାନେ ଏକସ୍ଥାନରେ ପହଞ୍ଚି ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟନା ଦେଖିଲେ । ଗୋଟିଏ କୁକ୍କୁର ଗୋଟିଏ ଶଶକଦ୍ୱାରା ଆକ୍ରାନ୍ତ ହୋଇ ଭୟରେ ପଳାଇ ଯାଉଅଛି । ଉକ୍ତ ଘଟନା ସେମାନଙ୍କୁ ଅତିଶୟ ଶୁଭସୂଚକ ବୋଲି ବୋଧ ହୋଇଥିଲା ଏବଂ ସେମାନେ ତତ୍କ୍ଷଣାତ୍ ସ୍ଥିର କଲେ ଯେ, ଯେଉଁ ସ୍ଥାନରେ ଘଟନା ଘଟିଥିଲା, ସେହି ସ୍ଥାନରେ ଯୁବରାଜଙ୍କପାଇଁ ଦୁର୍ଗ ପ୍ରସ୍ତୁତ କରିବାକୁ ହେବ । ସେହି ସ୍ଥାନରେ ରାଜବଂଶର ଅଧିହିତ ନଗର ପ୍ରତିଷ୍ଠିତ ହୋଇଅଛି ଏବଂ ଏହା ଏହି ରାଜ୍ୟର ରାଜଧାନୀ ଅଟେ । ଏହା ଭୂୟାଁପୀଢ଼ ପ୍ରଗଣାର ସୀମାରେ ଏକ ପର୍ବତମାଳାର ପାଦଦେଶରେ ଅତି କଦର୍ଯ୍ୟ ଖାଲ ଜମିରେ ଅବସ୍ଥିତ । ଏଠାରେ ମାଲେରିଆ ଜ୍ୱର ଅତି ପ୍ରବଳ ହୁଏ । ଦୁର୍ଗର ପୃଷ୍ଠଦେଶରେ ଦଣ୍ଡାୟମାନ ପର୍ବତଶିଖର ଉପରକୁ (ଯେଉଁଠାରେ ବାର୍ଷିକ ଉତ୍ସବ ହୁଏ ସେହି ସ୍ଥାନକୁ) ନଗରର ସମସ୍ତ ଅଂଶ ଦେଖାଯାଏ । ଓଡ଼ିଶାର ଅନ୍ୟାନ୍ୟ କରଦରାଜ୍ୟସମୂହର ଦୁର୍ଗମାନ ଯେଉଁପରି ସ୍ଥାନରେ

ଅବସ୍ଥିତ, ଏହା ମଧ୍ୟ ସେହିପରି ଅଟେ । ଜନଶ୍ରୁତି ଅଛି ଯେ, ମରହଟ୍ଟା ଓ ଅନ୍ୟାନ୍ୟ ଶତ୍ରୁମାନଙ୍କ ଆକ୍ରମଣରୁ ରକ୍ଷା ପାଇବା ନିମନ୍ତେ ରାଜପରିବାରବର୍ଗ ସ୍ୱତଧାଳ୍କନେ ଅରଣ୍ୟ ମଧ୍ୟରେ ପ୍ରବେଶ କରିବାପାଇଁ ଦୁର୍ଗମାନଙ୍କର ଅବସ୍ଥିତି ଏହିପରି ସ୍ଥାନମାନଙ୍କରେ ହୋଇଅଛି । ତତ୍‌କାଳୀନ ଇତିହାସ ଦୃଷ୍ଟିରେ ଏହା ମଧ୍ୟ ପ୍ରକୃତ ବୋଲି ବୋଧ ହୁଏ ।

ପ୍ରୋକ୍ତ ଯୁବରାଜଙ୍କ ଅନ୍ତଃପୁରରେ ଉପସ୍ତ୍ରୀ ଓ ଦାସୀରୂପେ ରହିବାପାଇଁ ଭୂୟାଁମାନେ ଆପଣା ଜାତି ମଧ୍ୟରୁ କେତେକ ବାଳିକା ପ୍ରଦାନ କରିଥିଲେ । ଉକ୍ତ ସ୍ତ୍ରୀମାନଙ୍କଠାରୁ ରାଜାଙ୍କ ଔରସରେ ଜାତ ସନ୍ତାନମାନେ ରାଜକୋଲି ଭୂୟାଁମାନଙ୍କ ପୂର୍ବପୁରୁଷ ବୋଲି କଥିତ ହୁଅନ୍ତି । ସେମାନେ ରାଜକୋଲ ବା ରାଜକୁଳରୁ ଜାତ ବୋଲି ରାଜକୋଲି ନାମରେ ଅଭିହିତ ହେବାର ଅନୁମିତ ହୁଏ । ରାଜବଂଶ ସହିତ ଏହି ସମ୍ପର୍କରୁ ସେମାନେ ଅନ୍ୟାନ୍ୟ ଭୂୟାଁମାନଙ୍କ ଅପେକ୍ଷା ଅଧିକ ଉନ୍ନତ ଏବଂ ରାଜାଙ୍କ ଅବଲମ୍ବିତ ହିନ୍ଦୁ ରୀତି ନୀତି ଅବଲମ୍ବନ କରି-ଅଛନ୍ତି ।

କେଉଁଝର ଦୁର୍ଗ ସ୍ଥାପନର ପ୍ରଥମ ଦିବସରୁ ଆଜି ପର୍ଯ୍ୟନ୍ତ ଭୂୟାଁମାନେ ସେମାନଙ୍କର ରହସ୍ୟମୟ ସାରଙ୍ଗଡିକ ପ୍ରଥା ସମ୍ପାଦନ ନ କରିବା ପର୍ଯ୍ୟନ୍ତ ରାଜାଙ୍କର ରାଜ୍ୟାଭିଷେକ ସମ୍ପୂର୍ଣ୍ଣ ହୋଇଅଛି ବୋଲି ସ୍ୱୀକାର କରନ୍ତି ନାହିଁ । ଏହି ଦାବି ଆଜି ପର୍ଯ୍ୟନ୍ତ ପ୍ରବଳ ହୋଇ ଆସୁଅଛି । ରାଜ୍ୟାଭିଷେକ ସମୟରେ ବିଭିନ୍ନ ସମ୍ପ୍ରଦାୟର ଭୂୟାଁମାନେ ବଂଶାନୁକ୍ରମେ

ସେମାନଙ୍କର କାର୍ଯ୍ୟ ସମ୍ପାଦନ କରୁଥିବା ନେତାଙ୍କ ଅଧୀନରେ ଦଳବଦ୍ଧ ହୋଇ ଅନନୁମିତ କର୍କଶସ୍ୱରବିଶିଷ୍ଟ ନାନା ବାଦ୍ୟ-ଯନ୍ତ୍ର ବାଦନପୂର୍ବକ ରାଜନଗରର ପ୍ରାଙ୍ଗଣକୁ ଅତି ସମାରୋହରେ ଗମନ କରନ୍ତି । ଏହି ସମୟରେ ଦଳପତି ରାଜଭକ୍ତିର ଚିହ୍ନ-ସ୍ୱରୂପ ଗୋଟିଏ ବୃହତ୍ ଖଣ୍ଡା କାନ୍ଧରେ ବହିଥାଏ । ପ୍ରବେଶ ସ୍ଥାନରେ ଖଣ୍ଡାଟି ଦେଇ ଏବଂ ଦଳପତି ଯୁବରାଜଙ୍କୁ ନିଜ ଜଙ୍ଘରେ ବସାଇ, ତତ୍ପରେ ସେ ରାଜାଙ୍କ ମସ୍ତକରେ ଚନ୍ଦନ ଲଗାଇ ଦେଇ ଯଥାବିଧାନରେ ସିଂହାସନାରୋହଣ କରାଏ । ଏଥି ଉତ୍ତାରୁ ସେମାନେ ସମସ୍ତେ ଏକାବେଳକେ ରାଜାଙ୍କ ଚରଣତଳରେ ସାଷ୍ଟାଙ୍ଗ ପ୍ରଣିପାତ କରି ପୂର୍ବକୃତ ଅପରାଧ ନିମନ୍ତେ କ୍ଷମା ପ୍ରାର୍ଥନା କରନ୍ତି ଏବଂ ପ୍ରକାଶ କରନ୍ତି ଯେ ସେମାନଙ୍କ ପ୍ରାର୍ଥନା ଗୃହୀତ ନ ହେବା ପର୍ଯ୍ୟନ୍ତ ସେମାନେ ଭୂମିରୁ ଉଠିବେ ନାହିଁ । ତତ୍ପରେ ନବାଭିଷିକ୍ତ ରାଜା ସେମାନଙ୍କୁ କ୍ଷମା ପ୍ରଦାନ କରି ସନ୍ତୋଷରେ ଗାତ୍ରୋତ୍ଥାନ କରିବାକୁ ଆଦେଶ ଦିଅନ୍ତି । ତଦୁତ୍ତାରେ ଦଳପତି ଅଗ୍ରସର ହୋଇ ରାଜା ଓ ରାଜବଂଶର ଚତୁରଙ୍ଗ ସୈନ୍ୟ ଏବଂ ରାଜ୍ୟର ସମସ୍ତ କୁଶଳ ଜିଜ୍ଞାସା କରେ । ଏହି ସବୁ ପ୍ରଶ୍ନର ଯଥାବିଧି ଉତ୍ତର ଦିଆଗଲେ ପରେ ରାଜାଙ୍କ ମାଦଳାପାଞ୍ଜିଲେଖକ ଖଣ୍ଡିଏ ତାଳପତ୍ର ପୋଥିରୁ କେତେଗୁଡ଼ିଏ ପ୍ରଶ୍ନ ପାଠ କରି 'ଭୂୟାଁମାନଙ୍କ ସ୍ୱାସ୍ଥ୍ୟ, ସେମାନଙ୍କ ବଂଶଧର, ଗୋମେଷାଦି ପଶୁ, ପାର୍ବତୀୟ ଝରଣା ଏବଂ ଗ୍ରାମ୍ୟକ୍ଷେତ୍ରମାନଙ୍କ ଅବସ୍ଥା ଉତ୍ତମ ଅଛି କି ବୋଲି ପଚାରନ୍ତି । ଏହାର ଉତ୍ତର-ଛଳରେ ପ୍ରତି ଗ୍ରାମର ପ୍ରଧାନମାନେ କ୍ରମାନ୍ୱୟରେ ପୁନର୍ବାର ରାଜାଙ୍କ ଚରଣତଳରେ ସାଷ୍ଟାଙ୍ଗ ପ୍ରଣାମ କରନ୍ତି ଏବଂ

ପ୍ରତ୍ୟେକ ନବାଭିଷିକ୍ତ ରାଜାଙ୍କ ଚରଣକୁ ମସ୍ତକରେ ଧାରଣ-ପୂର୍ବକ ପ୍ରଥମେ ଏକ ସ୍କନ୍ଧରେ ତତ୍ପରେ ଅପର ସ୍କନ୍ଧରେ ସ୍ଥାପନ କରି ଶେଷରେ ମସ୍ତକରେ ଲଗାନ୍ତି । ପୁନର୍ବାର ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ରାଜାଙ୍କ ନିକଟରୁ ବିଦାୟ ଗ୍ରହଣ କରନ୍ତି । ଏହିପରି ସେମାନଙ୍କଦ୍ୱାରା ରାଜ୍ୟାଭିଷେକ ସମ୍ପାଦିତ ହୁଏ । ଏହା ପରେ ନାନାପ୍ରକାର ଉତ୍ସବ ଓ ଭୋଜିର ଅୟୋଜନ କରାଯାଏ । ଯଥାର୍ଥରୂପେ (ପୁରୁଷାନୁକ୍ରମେ) ସିଂହାସନାରୋହଣ କାର୍ଯ୍ୟ ସମ୍ପାଦନକାରୀ ଭୂୟାଁମାନଙ୍କ ମଧ୍ୟରେ ଏହି ପ୍ରଥା କିଛି ଉନ୍ନତି ଲାଭ କରିଅଛି । ଜଣେ ରାଜାଙ୍କ ଉପରେ ଛତ୍ର ଧାରଣ କରେ, ଅନ୍ୟ ଜଣେ ଘୋଡ଼ା ହୋଇ ଯୁବରାଜଙ୍କୁ ପୃଷ୍ଠଦେଶରେ ବହନପୂର୍ବକ ( ଯେଉଁ ଲୋକ ତାହାଙ୍କୁ ଜାନୁ ଉପରେ ଉପବେଶନ କରାଇ ଅଭିଷିକ୍ତ କରିବ ) ତାହା ନିକଟକୁ ଘେନିଯାଏ । ଏହି ଉତ୍ସବ ପ୍ରତିବର୍ଷ ବୈଶାଖ ମାସରେ ସମ୍ପାଦିତ ହୁଏ । କେବଳ ରାଜାଙ୍କୁ ଗାଦି ଉପରେ ବସାଯାଏ ନାହିଁ । ଉଲ୍ଲିଖିତ ଘଟନାମାନଙ୍କରୁ ପ୍ରତୀୟମାନ ହେଉଅଛି ଯେ, ଅତି ପ୍ରାଚୀନକାଳରୁ ଭୂୟାଁମାନେ ଏପରି ଜଣେ ଶାସନକର୍ତ୍ତା ଲୋଡ଼ନ୍ତି, ଯାହାଙ୍କଠାରେ ସେମାନେ ନିଜ ନିଜ ଦୁଃଖ ନିବେଦନ କରି ପାରିବେ ଏବଂ ଯାହାଙ୍କଠାରୁ ସଦୁପଦେଶ ଗ୍ରହଣ କରି ପାରିବେ । କିନ୍ତୁ ସ୍ୱାଧୀନଭାବରେ ଶାସିତ ହେବାକୁ ସେମାନେ ଇଚ୍ଛା କରି ନାହାନ୍ତି ବା କରନ୍ତି ନାହିଁ । ପଶ୍ଚାତ୍‌ରେ ସେମାନେ ସେମାନଙ୍କ ଅଭିଷିକ୍ତ ରାଜାଙ୍କର ରାଜ୍ୟଶାସନ ନିୟମାବଳୀ ଗ୍ରହଣ କରିବା ଓ ତହିଁରେ ଦୋଷାରୋପ କରିବା ବିଷୟରେ କ୍ଷମତା ଦାବି କରନ୍ତି । ~ ~

ଭୂୟାଁମାନଙ୍କଦ୍ୱାରା ଯେଉଁ ସବୁ ସାମୟିକ ବିଦ୍ରୋହମାନ ଘଟିଅଛି, ତାହା କେବଳ କୌଣସି ଶାସନକର୍ତ୍ତାଙ୍କ ବ୍ୟବହାରରେ ସେମାନଙ୍କର ଅସନ୍ତୋଷ ଜନ୍ମିବା ବା ପ୍ରାର୍ଥିତ ବିଷୟମାନଙ୍କରେ ପ୍ରତିକାର ନ ମିଳିବା ଯୋଗେ ଘଟିଅଛି । ୧୮୯୦ ଠାରୁ ୧୮୯୩ ପର୍ଯ୍ୟନ୍ତ ଯେଉଁ ବିଦ୍ରୋହ ଘଟିଥିଲା, ତହିଁରେ ଲିଖିତ ବିଷୟ ବିଶଦରୂପେ ପ୍ରମାଣିତ ହୋଇଅଛି ।

ଯେତେବେଳେ ରାଜା ତାହାଙ୍କ ପରିବାରବର୍ଗଙ୍କୁ ଦେଶୀୟ ପୁଲିଶ ବା ପାଇକମାନଙ୍କ ତତ୍ତ୍ୱାବଧାନରେ ରଖି ନିଜେ ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ ଆଶ୍ରୟ ନେବାପାଇଁ କଟକ ନଗରୀକୁ ପଳାୟନ କରିଥିଲେ, ସେତେବେଳେ ଭୂୟାଁମାନେ ଏହି କଥା ଶ୍ରବଣ କରି ଦୁର୍ଗାକ୍ରମଣନିମିତ୍ତ ଦୃଢ଼ ସଙ୍କଳ୍ପ କରି ନ ଥିଲେ । ସେମାନେ ଇଚ୍ଛା କରିଥିଲେ ସହଜରେ ଦୁର୍ଗ ଅଧିକାର କରି ପାରିଥାନ୍ତେ, ଯେହେତୁ ସେମାନଙ୍କର ସଂଖ୍ୟା ଅଧିକ ଥିଲା ଏବଂ ଦୁର୍ଗ ଅତିଅଳ୍ପ ଲୋକଙ୍କଦ୍ୱାରା ରକ୍ଷିତ ହୋଇଥିଲା; ମାତ୍ର ସେମାନେ ସେମାନଙ୍କର ଅସନ୍ତୋଷ-ଉତ୍ପାଦନକାରୀ ରାଜାଙ୍କୁ ଅନୁପସ୍ଥିତ ଦେଖି ରାଜପରିବାରବର୍ଗଙ୍କ ପ୍ରତି କୌଣସି ଅନଷ୍ଟାଚରଣ କରିବାକୁ ଇଚ୍ଛା କରି ନ ଥିଲେ ।

ଭୂୟାଁପୀଢ଼ (ପ୍ରଗଣା) ରାଜାଙ୍କ ଦ୍ୱାରା ଶାସିତ ହେଉଥିଲେହେଁ ରାଣୀ ତାହାର ଉପସ୍ୱତ୍ୱ ଭୋଗ କରନ୍ତି । ଏଣୁ ତାହାଙ୍କୁ ସେମାନେ ମାତା ବୋଲି କହନ୍ତି ଏବଂ ତାହାଙ୍କ ପ୍ରତି ଅତ୍ୟନ୍ତ ସମ୍ମାନ ପ୍ରଦର୍ଶନ କରନ୍ତି । ପୂର୍ବକଥିତ ବିଦ୍ରୋହ ସମୟରେ ନେବର୍ତ୍ତୀ ଭୂୟାଁମାନଙ୍କ ଭୟରେ ପଳାଇ ଯାଇ ଅନ୍ତଃପୁରରେ

ରାଣୀଙ୍କ ଅଶ୍ୱ ଗ୍ରହଣ କରିଥିଲେ । ସେମାନେ ଏହା ଜାଣି ପାରି ପ୍ରତିଶୋଧ ଗ୍ରହଣେଚ୍ଛୁ ହୋଇ ତାଙ୍କୁ ହତ୍ୟା କରିବାକୁ ଅନ୍ତଃପୁର ମଧ୍ୟରେ ପ୍ରବେଶ କରିବା ମାତ୍ରକେ ଦେଖିଲେ ଯେ ସେ ରାଣୀଙ୍କୁ ନିଜ ମାତା ଜ୍ଞାନରେ ଅତିଶୟ ଭକ୍ତି କରୁଅଛନ୍ତି; ତେଣୁ ତାଙ୍କ ମୁଖ ଦେଖି କିଂକର୍ତ୍ତବ୍ୟବିମୂଢ଼ ହୋଇ ସ୍ୱୋକ୍ତ ଅଭିଳାଷରୁ ବିରତ ହେଲେ ।



## ସ୍ୱଭାବ ।



ଭୂୟାଁମାନଙ୍କ ସ୍ୱଭାବରେ କେତେକ ବିଶେଷତ୍ୱ ଅଛି; ଯାହା ଓଡ଼ିଶାର କରଦରାଜ୍ୟମାନଙ୍କରେ ବାସ କରୁଥିବା ଅନ୍ୟାନ୍ୟ ଆଦିମ ଜାତିମାନଙ୍କଠାରେ ଲକ୍ଷିତ ହୁଏ ନାହିଁ । ସରଳତା, ସତ୍ୟବାଦିତା, ସ୍ୱାଧୀନତା ପ୍ରତି ଅନୁରାଗ ମମତା, ନେତାମାନଙ୍କ ପ୍ରତି ଭକ୍ତି ଏବଂ ଅଦମନୀୟ ଇଚ୍ଛା ସେମାନଙ୍କଠାରେ ପରିଦୃଷ୍ଟ ହୁଏ । ଏହା ଛଡ଼ା ସେମାନେ ବନ୍ଧୁମାନଙ୍କ ପ୍ରତି ଅତ୍ୟନ୍ତ ବିଶ୍ୱାସୀ ଏବଂ ଅତିଥିସେବାରେ ସର୍ବଦା ତତ୍ପର; ଏମନ୍ତ କି, ସେମାନଙ୍କ ଆତିଥେୟତା ଓଡ଼ିଶା ପ୍ରଦେଶରେ ଆଦର୍ଶସ୍ଥାନୀୟ । ସେମାନେ କାହାରି ଅଧୀନତା ସ୍ୱୀକାରରେ ସର୍ବଦା ବିମୁଖ । ଅନ୍ୟପକ୍ଷରେ ସେମାନଙ୍କର ମହତ୍ ଦୋଷ ଏହି ଯେ ସେମାନେ ପ୍ରତିଶୋଧଲିପ୍ସୁ, ମଧ୍ୟ ସମୟ ସମୟରେ ସେମାନେ ପାଶବିକ ଶକ୍ତି

ଏବଂ ସ୍ୱାଭାବିକ ଶୈଥିଲ୍ୟର ବଶବର୍ତ୍ତୀ । ସେମାନଙ୍କର ସାଂସାରିକ ଜୀବିକାନିର୍ବାହ ପ୍ରତି ଔଦାସୀନ୍ୟ ଶେଷୋକ୍ତ ଦୋଷର କାରଣ ଅଟେ । ମଦ୍ୟପାନ ସେମାନଙ୍କ ମଧ୍ୟରେ ପ୍ରଚଳିତ, ବିନା ମଦ୍ୟପାନରେ ସେମାନଙ୍କ ନିଜ ଗୃହର ଉତ୍ସବ ଏବଂ ଗ୍ରାମର ସାଧାରଣ ଉତ୍ସବାଦି ସମ୍ପାଦିତ ହୁଏ ନାହିଁ; କେବଳ ସ୍ତ୍ରୀମାନେ ତହିଁରୁ ବଞ୍ଚିତ । ଏହା ପୁରୁଷମାନଙ୍କର ବିଧିବଦ୍ଧ ପ୍ରଥା ବୋଲି ବିବେଚିତ ହେଉଥିଲେହେଁ ସ୍ତ୍ରୀସମାଜ ମଧ୍ୟରେ ନିତାନ୍ତ ଦୂଷ୍ୟ ଏବଂ ଜଘନ୍ୟ କାର୍ଯ୍ୟ ବୋଲି ପରିଗଣିତ ।

ବିଶ୍ୱସ୍ତତା ଓ ସୌଜନ୍ୟ ସେମାନଙ୍କର ଦୁଇଗୋଟି ପ୍ରଧାନ ଗୁଣ । ସେମାନେ ପ୍ରତ୍ୟେକ ଆଗନ୍ତୁକ ପ୍ରତି ନିମନ୍ତ୍ରିତ ଅତିଥି-ତୁଲ୍ୟ ବ୍ୟବହାର କରନ୍ତି । କେହି ପଥିକ ସେମାନଙ୍କ ଗ୍ରାମରେ ଉପସ୍ଥିତ ହେଲେ ସେମାନେ ଆପଣା ଗ୍ରାମରେ ପ୍ରାପ୍ୟ ନାନାବିଧ ଖାଦ୍ୟସାମଗ୍ରୀ ଅଯାଚିତଭାବରେ ଯୋଗାନ୍ତି । ସ୍ତ୍ରୀମାନେ ମଧ୍ୟ ଆଦରପୂର୍ବକ ତାଙ୍କର ସମସ୍ତ ଅଭାବ ପୂରଣ କରିବାରେ ତତ୍ପର ଥାଇ ଜଳ ଓ କାଷ୍ଠାଦି ଆଣି ଦିଅନ୍ତି । ଅଭ୍ୟାଗତ ଯେତେ ଦିନ ଇଚ୍ଛା ସେତେ ଦିନ ରହି ପାରନ୍ତି, ସେମାନେ ତାଙ୍କୁ ସେମାନଙ୍କ-ଠାରୁ ଅନ୍ତର କରିବାକୁ ଇଚ୍ଛା ପ୍ରକାଶ କରନ୍ତି ନାହିଁ । ଆଗନ୍ତୁକ ବ୍ୟକ୍ତି ଯଦି ଜଣେ ରାଜକର୍ମଚାରୀ କିମ୍ବା କ୍ଷମତାଶାଳୀ ଲୋକ ହୁଅନ୍ତି, ତେବେ ଗ୍ରାମର ସ୍ତ୍ରୀମାନେ ତାଙ୍କ ସମ୍ମାନ ପ୍ରଦର୍ଶନ କରିବା ଅଭିପ୍ରାୟରେ ଦଳବଦ୍ଧ ହୋଇ ହଳଦିପାଣି ଓ ଖଣ୍ଡିଏ କାଷ୍ଠାସନ (ପୀଢ଼ା) ଧରି ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଉକ୍ତ ଜଳରେ ତାଙ୍କର ପାଦ ଧୌତ କରିଦେବାକୁ ଓ କାଷ୍ଠାସନ ଉପରେ ଉପବେଶନ କରାଇବାକୁ ଇଚ୍ଛା ପ୍ରକାଶ

କରନ୍ତି; ସେ ସମ୍ମତ ନ ହେଲେ ସୁଦ୍ଧା ଉକ୍ତ ଜଳରୁ କିଛି ଭୂମିରେ ଢାଳି ଦେଇ ଓ କାଷ୍ଠାସନ ଖଣ୍ଡି ରଖି ଦେଇ ସେମାନଙ୍କ ମଧ୍ୟରେ ଅତି ବୃଦ୍ଧା ସ୍ତ୍ରୀଟି ଆଣ୍ଠୁ ମାଡ଼ି ବସି ହାତ ଭୂମିରେ ରଖି ନମସ୍କାର କରେ । ଏହା ପରେ ଅନ୍ୟ ବୃଦ୍ଧାମାନେ ମଧ୍ୟ ତଦ୍ରୂପ କରନ୍ତି । ତତ୍‌ପରେ ସମସ୍ତେ ତାଙ୍କୁ ବିନୀତଭାବରେ କହନ୍ତି, ଆମ୍ଭେମାନେ ତ ଏପରି ଅବସ୍ଥାରେ ଅଛୁଁ, ଆମ୍ଭମାନଙ୍କର ଯାହା ଅଛି ସେଥିରୁ ଅଂଶ ଗ୍ରହଣ କରନ୍ତୁ । ଏହା କହି ତାଙ୍କୁ ମଣ୍ଡପଘରକୁ (ଅତିଥିଶାଳା) ନେଇଯାନ୍ତି । ସେମାନେ ସ୍ୱଜାତି-ପ୍ରିୟ ଏବଂ ଜାତିଗତ ବନ୍ଧନ ପ୍ରତି ଏପରି ଆସ୍ଥା ଦେଖାନ୍ତି ଯେ, କୌଣସି କାର୍ଯ୍ୟ ଉପଲକ୍ଷେ ଏକତ୍ରିତ ହେବାକୁ ଆହୂତ ହେଲେ ପ୍ରତ୍ୟେକେ ( କାହାର ଅନିଚ୍ଛା ସତ୍ତ୍ୱେ ) ଉପସ୍ଥିତ ହେବାକୁ ବାଧ୍ୟ । କେହି ଉପସ୍ଥିତ ନ ହେଲେ ଜାତି ପ୍ରତି ଅବମାନନା କଲା ବୋଲି ଭୂୟାଁସାଧାରଣର ଅଯୋଗ୍ୟ ବିବେଚିତ ହୋଇ ପତିତ ହୁଏ । ସେମାନଙ୍କର ଜାତିଗତ ଏକତା ଦୃଷ୍ଟିରେ ଏହା ସେମାନଙ୍କ ପକ୍ଷରେ ସମ୍ପୂର୍ଣ୍ଣ ସମ୍ଭବ ଯେ କେହି ସେମାନଙ୍କ ବଂଶାନୁକ୍ରମିକ ଓ ଆବହମାନକାଳରୁ ରକ୍ଷିତ ସ୍ୱତ୍ତ୍ୱୋପରି ହସ୍ତକ୍ଷେପ କରିବାକୁ ଏବଂ ସେମାନଙ୍କ ସ୍ୱାଧୀନତାହରଣାର୍ଥେ ସାମାନ୍ୟ ଚେଷ୍ଟା କଲେ ସେମାନେ ଇଚ୍ଛାମାତ୍ରକେ ସେମାନଙ୍କ ବାସଭୂମିରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ କରି ପାରନ୍ତି ।

ଭୂୟାଁମାନଙ୍କ ଉତ୍ତେଜନା କହିଲେ ପ୍ରାୟ ସମସ୍ତ କେନ୍ଦୁଝର ରାଜ୍ୟଟି ବିଦ୍ରୋହାଗ୍ନିରେ ପ୍ରଜ୍ୱଳିତ ବୋଲି ବୁଝିବାକୁ ହେବ । କାରଣ, ଆବହମାନ କାଳରୁ ସେମାନେ ଗଣ୍ଡ, ବାଠୁଡ଼ି, ସାଉନ୍ତି, ମଗଧାଗୋୟାଳ ଏବଂ ଆପଣା ସମ୍ପ୍ରଦାୟର ଅନ୍ୟାନ୍ୟ ଶ୍ରେଣୀୟ

ଅଧିବାସୀମାନଙ୍କ ଉପରେ ଅସୀମ ଆଧିପତ୍ୟ ସ୍ଥାପନ କରି ଅଛନ୍ତି । ଭୂୟାଁମାନେ ସଂଖ୍ୟାରେ ଅଳ୍ପ ହେଲେ ମଧ୍ୟ ରାଜ୍ୟସ୍ଥ ସମସ୍ତ ଲୋକଙ୍କ ଉପରେ ପ୍ରଭୁତ କ୍ଷମତା ବିସ୍ତାର କରି ଆସୁଅଛନ୍ତି ବା ଅଦ୍ୟାବଧି ଦେଖାଯାଏ ।

ଅନ୍ୟାନ୍ୟ ସମସ୍ତ ଜାତି ସବୁବେଳେ ସେମାନଙ୍କ ପ୍ରତି ସମ୍ମାନ କରନ୍ତି ଓ ସେମାନଙ୍କୁ ଭୟ କରନ୍ତି । ସେମାନେ ଯେଉଁ ଜାତିରୁ ଯାହା ନେବାକୁ ଚାହାନ୍ତି, ତାହା ଅକ୍ଲେଶରେ ନିଅନ୍ତି । ସେମାନଙ୍କ ନାମରେ ଐନ୍ଦ୍ରଜାଲିକ ଶକ୍ତି ନିହିତ ଥିଲା ପରି ବୋଧ ହୁଏ । କାରଣ, ୧୮୯୧ ଠାରୁ ୧୮୯୩ ପର୍ଯ୍ୟନ୍ତ ଯେଉଁ ବିଦ୍ରୋହ ହୋଇଥିଲା, ତାହାର ପ୍ରଥମ ଅବସ୍ଥାରେ ରାଜ୍ୟସ୍ଥ ସମସ୍ତ ଲୋକେ "ଆପଣମାନେ ଆମ୍ଭମାନଙ୍କର ବଡ଼ ଭାଇ ଏବଂ ଆମ୍ଭେମାନେ ଆପଣମାନଙ୍କର ଆଶ୍ରିତ ଲୋକ, ଏଣୁ ଆପଣମାନଙ୍କ ଆଦେଶ କୌଣସିମତେ ଲଙ୍ଘନ କରି ନ ପାରୁଁ" ଏହା କହି ସେମାନଙ୍କର ଦଳପତିମାନଙ୍କୁ ଲାଞ୍ଚ ଦେଇ ସେମାନଙ୍କର ଧନ, ଜୀବନ ରକ୍ଷା କରିବା ସକାଶେ ସେମାନଙ୍କଠାରେ ଶରଣାପନ୍ନ ହୋଇଥିଲେ ।

ଭୂୟାଁ ସ୍ତ୍ରୀମାନେ ଗୃହ, କ୍ରୀଡ଼ା, ପାରିଧି, କେବଳ ଏହି ତିନିଗୋଟି କାର୍ଯ୍ୟ ଛାଡ଼ି ଅବଶିଷ୍ଟ ସମସ୍ତ ସାଂସାରିକ କାର୍ଯ୍ୟ ନିଜେ ନିଜେ ନିର୍ବାହ କରିଥାନ୍ତି । ସେମାନେ ଅତ୍ୟନ୍ତ ସୁଶୀଳା ଅଟନ୍ତି । ସେମାନେ ଦୈନିକ ଖାଦ୍ୟ ସଂଗ୍ରହ କରି ତାବତୀୟ ଗୃହକାର୍ଯ୍ୟ ପ୍ରତି ଦୃଷ୍ଟି ରଖନ୍ତି । ମାତୃତାଞ୍ଜୀନ ସେମାନଙ୍କ ହୃଦୟରେ ପୋଷଣ କରନ୍ତି ନାହିଁ ଏବଂ ସେମାନେ ଶିଷ୍ଟବାକ୍ୟ

ପ୍ରୟୋଗ କରି ଜାଣନ୍ତି ନାହିଁ । ସେମାନେ ଶିର ନ ନୁଆଁଇଁ ଦୁଇ ହସ୍ତ ଯୋଡ଼କରି କପାଳ ପର୍ଯ୍ୟନ୍ତ ଉଠାଇ ଉଚ୍ଚସ୍ୱରରେ "ସଲାମ" କହି ପ୍ରଣାମ କରନ୍ତି । ସେମାନେ ହିନ୍ଦୁମାନଙ୍କ ସଭ୍ୟତା ଓ ଧର୍ମର ଉତ୍କୃଷ୍ଟ ଅଂଶ ଅନୁକରଣ କରିବାକୁ ଯାଇ ସେମାନଙ୍କୁ ଦେଖାନ୍ତି ଯେ ସେମାନେ ହିନ୍ଦୁମାନଙ୍କଠାରୁ ଅଧିକ ଉନ୍ନତ । ସେମାନେ ଗର୍ବ କରନ୍ତି ଯେ ସେମାନେ ମାତୃଭକ୍ତ ସେମାନଙ୍କର ଏକ କଥା ଏବଂ ସେମାନଙ୍କ ସମାଜରେ ଏକତା ଅଛି, ମାତ୍ର ହିନ୍ଦୁମାନଙ୍କ ମଧ୍ୟରେ ଅସଂଖ୍ୟ ଜାତି ଗଠିତ ହୋଇ ଏକତା ବିନଷ୍ଟ ହୋଇଅଛି ।



## ଆକୃତି ଓ ବେଶଭୂଷା ।



ଭୂୟାଁମାନେ ସେମାନଙ୍କ ନିକଟରେ ବାସ କରୁଥିବା ଅନ୍ୟାନ୍ୟ ଅସଭ୍ୟ ଜାତିମାନଙ୍କଠାରୁ, ଦେଖିବାକୁ ଅଧିକ ସୁନ୍ଦର । ଦେହର ରଙ୍ଗ ଟିକିଏ ଶୁଭ୍ର, ମୁଖଶ୍ରୀ ତେତେ ସୁନ୍ଦର ନୁହେ । ମାତ୍ର ସେମାନେ ଅତି ସାହସୀ, ବଳବାନ୍ ଓ କର୍ମଠ ଏବଂ ସାଧାରଣଭାବରେ ଛୋଟା ଏବଂ ଅତି ଭାରି ଦ୍ରବ୍ୟ ବହନ କରି ସରଳଭାବରେ ପର୍ବତ ଉପରେ ଏପରି ଦ୍ରୁତ ପାଦବିକ୍ଷେପ କରନ୍ତି ଯେ, ଅନ୍ୟ ଲୋକ ତାଙ୍କ ସଙ୍ଗରେ ଦଉଡ଼ି ପାରିବେ ନାହିଁ । ସେମାନଙ୍କ ହସ୍ତ ଓ ପଦ ସ୍ଥୂଳ ଓ ଦୃଢ଼, ମୁଖ

ଗୋଲ, ଓଷ୍ଠ ମୋଟ, ଗାଲର ହାଡ଼ ଉଚ୍ଚ ଏବଂ କୋଣ୍ଟ ଓ ଅନ୍ୟମାନଙ୍କ ପରି ନାକ ବଡ଼ । ଭୂୟାଁମାନଙ୍କର ଦାଢ଼ି ପ୍ରାୟ ନ ଥାଏ ଏବଂ ମୁଣ୍ଡର ବାଳ କୁଞ୍ଚିତ, କର୍କଶ ଓ କୃଷ୍ଣବର୍ଣ୍ଣ । ସ୍ତ୍ରୀ ଓ ପୁରୁଷ ଉଭୟ ତେଲ ଲଗାଇ ଓ କୁଣ୍ଡାଇ ବାଳ ବଢ଼ାନ୍ତି । ପୁରୁଷମାନେ କପାଳର ଉପରଭାଗ କ୍ଷୌର ହୁଅନ୍ତି. ମାତ୍ର ଏଦ୍ୱାରା ସେମାନେ ଅଧିକ କୁତ୍ସିତ ଦେଖାଯାନ୍ତି । ସେମାନଙ୍କ ମଧ୍ୟରୁ କେତେକ ତେଲ ନ ଲଗାଇ କିମ୍ବା ମୁଣ୍ଡ ନ କୁଣ୍ଡାଇ କେଶ ଜଟାରୂପେ ବଢ଼ାନ୍ତି । ପରିଧେୟ ବସ୍ତ୍ର ପୁରୁଷମାନଙ୍କ ପକ୍ଷରେ ପ୍ରୟୋଜନାତିରିକ୍ତ ବୋଧ ହୁଏ । ସେମାନେ ଅଣ୍ଟାରେ ଖଣ୍ଡେ ଦଉଡ଼ି ବାନ୍ଧି କେବଳ କୌପୀନ ପରିଧାନ କରନ୍ତି । ସେମାନଙ୍କ ମଧ୍ୟରେ ଯେଉଁମାନେ ଅଧିକ ଉନ୍ନତ, ସେମାନେ ଆଣ୍ଠୁ ପର୍ଯ୍ୟନ୍ତ ବିସ୍ତୃତ ଖଣ୍ଡେ ଧୋତି ପିନ୍ଧନ୍ତି ।

ଭୂୟାଁ ସ୍ତ୍ରୀମାନଙ୍କଠାରେ କିଛି ବିଶେଷତ୍ୱ ଅଛି । ସେମାନେ ସେମାନଙ୍କ ଗ୍ରାମ ନିକଟରେ ବାସ କରୁଥିବା ବ୍ୟକ୍ତିମାନଙ୍କ ବୁଣା ଶାଢ଼ି ପରିଧାନ କରନ୍ତି । ମାତ୍ର ହିନ୍ଦୁ ସ୍ତ୍ରୀମାନଙ୍କ ପରି ଓଢ଼ଣା ପକାନ୍ତି ନାହିଁ । ସେମାନଙ୍କ ଶରୀର ଦୃଢ଼ ଏବଂ ସୁନ୍ଦରଭାବରେ ଗଠିତ, ସେମାନଙ୍କ ଭାବ ଭଙ୍ଗୀ ମନୋହର ଏବଂ ସେମାନେ ଅତି ସରଳା ଓ ନିର୍ଭୟା, ଅଧିକାଂଶ ବାହୁ ଓ ପୃଷ୍ଠରେ ଚିତା କୁଟାନ୍ତି । ଅଳଙ୍କାର ମଧ୍ୟରେ କାନରେ ଓ ନାକରେ ଫାସିଆ. ବେକରେ ନାନା ରଙ୍ଗର ପଥର କଣ୍ଠିମାଳା, କେହି କେହି ସମୟ ସମୟରେ ପିତ୍ତଳର ମାଳା ପିନ୍ଧନ୍ତି ଏବଂ

ଏହି ମାଳାସବୁ ବକ୍ଷଦେଶ ଅବୃତ କରି ଲୁଟି ପର୍ଯ୍ୟନ୍ତ ବିସ୍ତୃତ ହୋଇଥାଏ । ହସ୍ତରେ ବହୁସଂଖ୍ୟକ ସରୁ ସରୁ ପିତ୍ତଳ ବଳା ଲଗାନ୍ତି । ସେ ସବୁ ହସ୍ତର ସାମାନ୍ୟ ଗତିରେ ଝଣ ଝଣ ଶବ୍ଦ ଉତ୍ପାଦନ କରେ । ଅନେକେ ଗୋଡ଼ରେ ପିତ୍ତଳର ମୁଦମାନ ଲଗାନ୍ତି । ପୁରୁଷମାନେ ଅଲଙ୍କାରପ୍ରିୟ ନୁହନ୍ତି । ସେମାନେ କେବଳ ବେକରେ ପଥର, କାଠ ଅବା ମଞ୍ଜିର ତିଆରି ଗୋଟି ମାଳା ପିନ୍ଧନ୍ତି ଓ କେତେକ ପଇତା ପକାନ୍ତି । ଏହାଦ୍ୱାରା ତାଙ୍କର ଆଡ଼ମ୍ବର ଭିନ୍ନ ଧର୍ମଗତ ଭାବ ନ ଥାଏ । ସ୍ତ୍ରୀମାନେ ବନ୍ୟପୁଷ୍ପରେ ଅତି ଆଗ୍ରହ କରନ୍ତି । ପ୍ରାୟ ସମସ୍ତେ ସୁବାସିତ ପୁଷ୍ପର ଗୁଚ୍ଛ ଅବା ମାଳା ମୁଣ୍ଡରେ ଲଗାଇ ଥିବାର ଦେଖାଯାଏ ଓ ଜୁଡ଼ାକୁ ଅଧିକ ସୁନ୍ଦର କରିବା ଅଭିପ୍ରାୟରେ ଅଧିକ ଝୁମ୍ପା ଗୁଡ଼ାଇଥାନ୍ତି ।



## ଜାତିଗତ ସମ୍ମାନ ।



ଭୂୟାଁମାନେ କୁକ୍କୁଟ ଓ କୀଟାଦି ଭକ୍ଷଣ କରୁଥିଲେ ସୁଦ୍ଧା ସେମାନଙ୍କ ଚତୁର୍ଦ୍ଦିଗରେ ବାସ କରୁଥିବା ହିନ୍ଦୁମାନଙ୍କ-ଦ୍ୱାରା ନୀଚ ଜାତି ବୋଲି ପରିଗଣିତ ହୁଅନ୍ତି ନାହିଁ, ଯେହେତୁ କେନ୍ଦୁଝର ଦୁର୍ଗ ସ୍ଥାପିତ ହେବା ସମୟରୁ ସେମାନେ

ଗାଜବଂଶର ତତ୍ତ୍ୱାବଧାରକ ଥାଇ ଗୃହସମ୍ବନ୍ଧୀୟ ଅଧିକାଂଶ କାର୍ଯ୍ୟରେ ଯୋଗ ଦିଅନ୍ତି ଏବଂ ଅନ୍ତଃପୁର ଛତ୍ରପରିବନ୍ଧ କରନ୍ତି । ଓଡ଼ିଶାର କରଦ ରାଜ୍ୟମାନଙ୍କରେ ହିନ୍ଦୁଧର୍ମର ନୀତି ରାଜାମାନଙ୍କଦ୍ୱାରା ପରିଚାଳିତ ହୁଏ । ରାଜା ଯେଉଁ ନୀତି ଅନୁସରଣ କରନ୍ତି, ରାଜ୍ୟର ସମସ୍ତ ଲୋକେ ସେହି ପଥରେ ଚାଲନ୍ତି । ବ୍ରାହ୍ମଣମାନେ ମଧ୍ୟ ସେମାନଙ୍କ ଆଚାର ବ୍ୟବହାର ଓ ଧର୍ମସମ୍ବନ୍ଧୀୟ ବିଧାନାଦିରେ ରାଜାଙ୍କ ପରାମର୍ଶ ନିଅନ୍ତି ।

---

## ଭାଷା ।

ଭୂୟାଁମାନେ ଓଡ଼ିଆ ଭାଷାରେ କଥା କହନ୍ତି । ଉଚ୍ଚାରଣ ଓ ବ୍ୟବହାର ଦୋଷରୁ ସେମାନଙ୍କ କଥିତ କେତେକ ଶବ୍ଦ ଓଡ଼ିଆ ଭାଷାର ଅନ୍ତର୍ଗତ ବୋଲି ଜଣାପଡ଼େ ନାହିଁ । ବର୍ତ୍ତମାନ ସୁଦ୍ଧା ସେମାନଙ୍କ ବାକ୍ୟ ସମ୍ବୋଧନସୂଚକ ବା ପ୍ରଶ୍ନବ୍ୟଞ୍ଜକ ଅଟେ । ବାକ୍ୟଗୁଡ଼ିକ ସରଳ ଓ କ୍ଷୁଦ୍ର । ସେମାନଙ୍କ ସ୍ୱର ମୃଦୁ ଓ ଗମ୍ଭୀର, କଥା ଅଧେ ଛୋଟ ଛୋଟ କହିବାରୁ ଅସ୍ପଷ୍ଟ ବୋଧ ହୁଏ । ସେମାନଙ୍କର କୌଣସି ସ୍ୱତନ୍ତ୍ର ଭାଷା ଥିବାର କହାଯାଇ ନ ପାରେ । ମାତ୍ର ବର୍ତ୍ତମାନ କଥିତଭାଷାରେ ଓଡ଼ିଆ ଭାଷାରୁ ପୃଥକ୍ କୌଣସି ଭାଷାର ଶବ୍ଦ ଶୁଣାଯାଏ ନାହିଁ । ସେମାନଙ୍କର ସ୍ୱତନ୍ତ୍ର ଭାଷା ଥିବାର କିମ୍ବଦନ୍ତୀ ମଧ୍ୟ ନାହିଁ ।

## ଆଚାର ବ୍ୟବହାର ।

ଭୂୟାଁମାନେ ନିଜ ଗ୍ରାମରେ ପ୍ରାୟ ବିବାହିତ ହୁଅନ୍ତି ନାହିଁ, କାରଣ ଗ୍ରାମବାସିମାନଙ୍କ ସଙ୍ଗେ ପରସ୍ପର ଘନିଷ୍ଠ ସମ୍ବନ୍ଧ ଥାଏ । ପ୍ରାୟ ସେମାନେ ନିକଟବର୍ତ୍ତୀ ଅନ୍ୟ ଗ୍ରାମମାନଙ୍କରେ ବିବାହ କରନ୍ତି । ବ୍ୟଭିଚାର ପ୍ରତି ସେମାନଙ୍କର ଭୟ ଥାଏ । ଯେଉଁଠାରେ ବ୍ୟଭିଚାର ଦୋଷ ଲକ୍ଷିତ ହୁଏ, ସେଠାରେ ସେମାନେ ବୈବାହିକ ସମ୍ବନ୍ଧ ସ୍ଥାପନ କରନ୍ତି ନାହିଁ । ଆପଣା ସମ୍ପ୍ରଦାୟ ବା ଜାତି ମଧ୍ୟରେ ଆପଣା ଇଚ୍ଛାନୁସାରେ ସ୍ତ୍ରୀ ସ୍ୱାମୀ ନିର୍ବାଚନ କରିବା ଓ ପୁରୁଷ ସ୍ତ୍ରୀ ଗ୍ରହଣ କରିବା ସେମାନଙ୍କ ମଧ୍ୟରେ ନିଷେଧ ନାହିଁ । ନିଜ ଜାତିରୁ ପୃଥକ୍ ହେଲେ ଦୋଷାବହ; ଯେ ସେପରି କରେ, ସେ ପତିତ ବିବେଚିତ ହୁଏ । ଏହି ଅନାର୍ଯ୍ୟଜାତିମାନଙ୍କର ନୃତ୍ୟପ୍ରିୟତା ସ୍ୱାଭାବିକ ଗୁଣ । ପ୍ରାୟ ଗ୍ରାମବାସୀ ସମସ୍ତେ ନୃତ୍ୟରେ ଯୋଗ ଦିଅନ୍ତି । ସ୍ତ୍ରୀ ଓ ପୁରୁଷ ପରସ୍ପର ଆଡ଼କୁ ମୁଖ କରି ନିଜ ନିଜ ଶ୍ରେଣୀ ଧରି ଛିଡ଼ା ହୁଅନ୍ତି । ଭଲ ନୃତ୍ୟକାରୀ ଏକ କୋଣକୁ ରହେ । ପୁରୁଷମାନେ ଗୁଙ୍ଗୁ ବଜାନ୍ତି ଓ ଗୀତ ଗାଆନ୍ତି, ସ୍ତ୍ରୀ ଓ ପୁରୁଷ ସମସ୍ତେ ନିଜ ନିଜ ଧାଡ଼ି ପୃଥକ୍ ରଖି ବୃତ୍ତାକାର ଗତିରେ ନାଚନ୍ତି । ସ୍ତ୍ରୀମାନେ ନିଜ ଶାଢ଼ିର ଅର୍ଦ୍ଧେକ ଓଢ଼ଣା ପକାଇ ଅଣ୍ଟାଠାରୁ ଶିର ପର୍ଯ୍ୟନ୍ତ ନୁଆଇଁ ପରସ୍ପର ହାତ ଧରି ନାଚନ୍ତି । ଯେତେବେଳେ କୌଣସି ରସପୂର୍ଣ୍ଣ ମଧୁର ଗୀତ ବୋଲାଯାଏ, ସେତେବେଳେ

ତାହାକୁ ଅଧିକ ଭାବପୂର୍ଣ୍ଣ କରିବାକୁ ପୁରୁଷମାନେ ମଧ୍ୟ ନଇଁ ନଇଁ ନାଚନ୍ତି । ଏହି ନୃତ୍ୟ କେବଳ ଆଗକୁ ଓ ପଛକୁ ଯଥା- କ୍ରମେ ତିନି ଥର ପଦବିକ୍ଷେପଦ୍ୱାରା ସମ୍ପାଦିତ ହୁଏ । ସମସ୍ତ ଦଳଟି ଗୋଟିଏ ପେଣ୍ଡୁଲମ୍ ପରି ଆଗକୁ ପଛକୁ ଗତିଥିବାର ବୋଧ ହୁଏ । ଏହା ସେମାନଙ୍କର ଅତି ପ୍ରିୟ ନୃତ୍ୟ । ମଧ୍ୟେ ମଧ୍ୟେ ପରିବର୍ତ୍ତନ ପାଇଁ ବ୍ୟାଘ୍ର, ସର୍ପ ଓ ପକ୍ଷୀ ଗତିର ଅନୁକରଣରେ ନୃତ୍ୟ ହୁଏ । ବାଘନାଚ ଗୁଡ଼ି ଗୁଡ଼ି ଚାଲିଦ୍ୱାରା ହୁଏ । ସାପନାଚ ଶିର ନତ ନ କରି ମୁଖକୁ ମୁଖ ସମାନ ରଖି କରା ହୁଏ । ଅଧିକବୟସ୍କ ଲୋକମାନେ ଚତୁର୍ଦ୍ଦିଗରେ ଗୋଲ ହୋଇ ବସି କେତେବେଳେ ଉତ୍ସାହବ୍ୟଞ୍ଜକ ବାକ୍ୟ ପ୍ରୟୋଗ କରୁଥାନ୍ତି, କେତେବେଳେ ବା ନୃତ୍ୟକାରମାନଙ୍କ କାର୍ଯ୍ୟର ସମାଲୋଚନାରେ ପ୍ରବୃତ୍ତ ଥାନ୍ତି ।

ଭୂୟାଁମାନେ ଏକତ୍ରିତ ହୋଇ ବାସ କରନ୍ତି । ଅନ୍ୟାନ୍ୟ ଜାତିମାନଙ୍କଠାରୁ ମଧ୍ୟ ପୃଥକ୍ ରହନ୍ତି । କୌଣସି ସାମାନ୍ୟ ବିଷୟରେ କିଛି ବିଚାର କରିବାକୁ ହେଲେ ସମସ୍ତେ ଏକତ୍ରିତ ହୋଇ ବସି ବିଚାର କରନ୍ତି ଓ ସମସ୍ତଙ୍କ ମତର ଐକ୍ୟାନୁସାରେ କାର୍ଯ୍ୟ କରନ୍ତି । ଏହି ପ୍ରଥାର ବଶବର୍ତ୍ତୀ ଥିବାରୁ କେହି ସେମାନଙ୍କ ମଧ୍ୟରୁ କୌଣସି ଲୋକକୁ ରାଜସ୍ୱ ଆଦାୟ ଦେବାକୁ କହିଲେ ସେ "ଅନ୍ୟମାନେ ଦେଲେ ମୁଁ ଦେବି" ଏହି ଉତ୍ତର ଦେଇ ଥାଏ । ଯଦି ରାଜସ୍ୱସଂଗ୍ରହକାରୀ ଗୋଟିଏ ଗ୍ରାମର ରାଜସ୍ୱ ଆଦାୟ କରି ପାରେ, ତେବେ ତାହାକୁ ଅନ୍ୟ ଗ୍ରାମ ମଧ୍ୟରେ କୌଣସି ଅସୁବିଧା ହୁଏ ନାହିଁ; କାରଣ ଗୋଟିଏ ଗ୍ରାମରୁ ଆଦାୟ

ହେଲେ ଏ ଖବର ଅନ୍ୟ ଗ୍ରାମରେ ପ୍ରଚାରିତ ହୁଏ ଏବଂ ଅନ୍ୟ ଗ୍ରାମବାସୀମାନେ ଆହୂତ ନ ହୋଇ ଆପଣା ଆପଣା ଦେୟ ଦେଇଯାନ୍ତି ।

ଦେଶଭୂୟାଁମାନେ ପାହାଡ଼ିଆ ଭୂୟାଁମାନଙ୍କ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ବୋଲି ଦାବି କରନ୍ତି, ମାତ୍ର ସେମାନଙ୍କ ସଙ୍ଗେ ବୈବାହିକ ସମ୍ବନ୍ଧ ସ୍ଥାପନ କରନ୍ତି ନାହିଁ । କାରଣ ସେମାନେ କେତେକ ହିନ୍ଦୁ ରୀତି ନୀତି ଅନୁସରଣ କରିଥାନ୍ତି । ସେମାନଙ୍କର ଭଣ୍ଡାରି ଓ ଧୋବା ସେବା କରନ୍ତି, ମାତ୍ର ପାହାଡ଼ିଆ ଭୂୟାଁମାନଙ୍କର ଏ ସବୁ ନ ଥାଏ, ଭୂୟାଁମାନେ ସମୟର ମୂଲ୍ୟ ବୁଝନ୍ତି ନାହିଁ । କୌଣସି ନିରୂପିତ ଦିବସରେ ଉପସ୍ଥିତ ହେବାକୁ ଆଦିଷ୍ଟ ହୋଇ ଅଧିକାଂଶ ସମୟରେ ଦିନେ ଦୁଇଦିନ ପରେ ଦେଖା ଦିଅନ୍ତି, ବିଳମ୍ବର କାରଣ ପଚାରିଲେ ସେମାନେ ଉତ୍ତର ଦିଅନ୍ତି "ମୋର ସେଦିନ କାର୍ଯ୍ୟ ଥିଲା, ଆଜି ଯାହା କରିବାର କର ।"

ବହୁକାଳରୁ ଏପରି ଗୋଟିଏ ରୀତି ପ୍ରଚଳିତ ଅଛି ଯେ ଏକଦଳ ପୁରୁଷ ଏକଦଳ ସ୍ତ୍ରୀଙ୍କ ସଙ୍ଗେ ଭେଟ ହେଲେ ପରସ୍ପର ଗୀତ ଛଳରେ ଉତ୍ତର ପ୍ରତ୍ୟୁତ୍ତର ଦେଇ ଆପଣା ମନୋଗତ ଭାବ ବ୍ୟକ୍ତ କରନ୍ତି । ଏପରି ସଙ୍ଗୀତରେ ଅନେକ ଘଣ୍ଟା ପର୍ଯ୍ୟନ୍ତ ସେମାନେ ଲିପ୍ତ ରହନ୍ତି । ସମୟ ସମୟରେ ସମସ୍ତ ଦିନ ଭୋଜନ ନ କରି ମଧ୍ୟ କଟାଇ ଦିଅନ୍ତି । ବିଶେଷତଃ ଧାନବୁଣା ଓ ରୁଆ ସମୟରେ ଏଥିର ଚର୍ଚ୍ଚା ବିଶେଷ ପରିମାଣରେ ହୁଏ । କାରଣ ଯେ ସମୟରେ ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ (ମଜୁରି

ନେଇ କାର୍ଯ୍ୟ କରିବାକୁ ) ଲୋକ ଯାନ୍ତି । ସ୍ତ୍ରୀ ବା ପୁରୁଷ ଏକଦଳ ଘଟନାକ୍ରମେ ଅନ୍ୟଦଳ ସଙ୍ଗେ ଭେଟ ହେଲେ ଉପରୋକ୍ତମତେ ସଙ୍ଗୀତରେ ଲିପ୍ତ ହୁଅନ୍ତି ଏବଂ ପରସ୍ପର ମଧ୍ୟରେ ଜୟ, ପରାଜୟ ପାଇବାପର୍ଯ୍ୟନ୍ତ ଗୀତ ବୋଲୁଥାନ୍ତି । ଅଧିକାଂଶ ସମୟରେ ସ୍ତ୍ରୀମାନେ ଜୟଲାଭ କରନ୍ତି ।



## ବିବାହପ୍ରଥା ।



ଯାଏଁ କନ୍ୟା ପୁରୁଷ ବୟଃପ୍ରାପ୍ତ ନ ହେଲେ ବିବାହ ବିଷୟରେ କୌଣସି କଥା ଉତ୍ଥାପିତ ହୁଏ ନାହିଁ । କେହି ଯୁବକ ବା ଯୁବତୀ ବିବାହ ପାଇଁ ଚେଷ୍ଟା କଲେ ତାହାର ପିତା ମାତା କମ୍ବା ଆତ୍ମୀୟବର୍ଗ କୌଣସି ବାଧା ଦିଅନ୍ତି ନାହିଁ, ବରଂ ଅବଶ୍ୟକମତେ ପରାମର୍ଶ ଦିଅନ୍ତି । ଯୁବକ ଓ ଯୁବତୀ ମଧ୍ୟରେ ପ୍ରଣୟ ଜନ୍ମିବାପାଇଁ ଅନେକ ପ୍ରକାର ଉପାୟ ଅବଲମ୍ବିତ ହୁଏ । ଯଥା— (୧) ଦୈନିକ ନୃତ୍ୟ ସମୟରେ ଯୁବକର ଏପରି ସ୍ୱାଧୀନତା ଥାଏ ଯେ, ଯେଉଁ ଯୁବତୀ ପ୍ରତି ତାହାର ପ୍ରଣୟ ଜନ୍ମେ, ସେ ହଠାତ୍ ତାହାର ହାତ ଧରି ଗୋଟିଏ ଗୁପ୍ତ ସ୍ଥାନକୁ ଟାଣି ନେଇଯାଏ ଏବଂ ସେମାନେ ଅନ୍ୟାନ୍ୟମାନଙ୍କ ଅଜ୍ଞାତସାରରେ ଦୁଇ କମ୍ବା ତିନି ଦିନ ସେ ସ୍ଥାନରେ ବାସ କରନ୍ତି । ଉକ୍ତ ସ୍ଥାନରୁ ସେମାନେ ଫେରିଲେ କନ୍ୟାପକ୍ଷ ବରର ପିତା ଗୃହକୁ ଯାଇ

ଯୌତୁକାଦି ସ୍ଥିର କରନ୍ତି । (୨) ଅବିବାହିତା ଯୁବତୀମାନେ ଦଳବଦ୍ଧ ହୋଇ ଫଳମୂଳ ଆହରଣାର୍ଥେ ଜଙ୍ଗଲ ମଧ୍ୟକୁ ଯିବା ସମୟରେ କେହି ଯୁବକ ସେମାନଙ୍କ ମଧ୍ୟରୁ ଯେଉଁ ଯୁବତୀକୁ ଆପଣାର ସ୍ତ୍ରୀରୂପେ ବରଣ କରିବାକୁ ପୂର୍ବରୁ ସ୍ଥିର କରିଥାଏ, ତାହାର କେଶରେ ଗୋଟିଏ ଫୁଲ ଖୋସିଦିଏ; ଏହାର ଅଭିପ୍ରାୟ ଏହି ଯେ ଏହାଦ୍ୱାରା ସେ ପ୍ରତିଜ୍ଞା କଲା ଯେ ଏ ଯୁବତୀ ଛଡ଼ା ଅନ୍ୟ କାହାକୁ ସେ ସ୍ତ୍ରୀ କରିବ ନାହିଁ । ମଧ୍ୟ ଅନ୍ୟ କେହି ଯୁବକ ସେ ଯୁବତୀ ଉପରେ ଦାବି କରି ପାରିବ ନାହିଁ । ସାଧାରଣତଃ ଯେଉଁ ସୁଗନ୍ଧ ପୁଷ୍ପ ପେଣ୍ଡା ପେଣ୍ଡା ହୋଇ ଫୁଟେ ଏବଂ ରଙ୍ଗ ଶୁକ୍ଳ ହୋଇଥାଏ, ତାହା ଏ କାର୍ଯ୍ୟରେ ବ୍ୟବହୃତ ହୁଏ । ସମୟ ସମୟରେ ଉକ୍ତପ୍ରକାର ପୁଷ୍ପ ଦୁଷ୍ପ୍ରାପ୍ୟ ହେଲେ ରକ୍ତବର୍ଣ୍ଣ ପୁଷ୍ପ ମଧ୍ୟ ବ୍ୟବହୃତ ହୁଏ । ଯେଉଁ ପୁଷ୍ପ ସାଧାରଣତଃ ସ୍ତ୍ରୀମାନେ ଜୁଡ଼ାରେ ଲଗାନ୍ତି, ସେହି ପୁଷ୍ପ ଆବଶ୍ୟକ ବୋଲି ବିବେଚିତ ହୁଏ । (୩) ସମୟ ସମୟରେ ଜଙ୍ଗଲ ମଧ୍ୟରେ ଯାଉଥିବା ଯୁବତୀ-ଦଳ ମଧ୍ୟରୁ ଗୋଟିକୁ ତାହାର ନାୟକ ହାତ ଧରି ଜଙ୍ଗଲ ମଧ୍ୟକୁ ଟାଣି ନେଇଯାଏ । ଏହା ହେଲେ ଅବଶିଷ୍ଟ ଯୁବତୀବର୍ଗ ସେ ଯୁବତୀର ଗ୍ରାମକୁ ଯାଇ ପ୍ରାଚୀନ ଲୋକମାନଙ୍କୁ ଡାକି କହନ୍ତି, "ଆମ୍ଭେମାନେ ଅଜି ବଣ ମଧ୍ୟରେ ଯାଉଥିବାବେଳେ ଗୋଟିଏ ବାଘ ଆମ୍ଭମାନଙ୍କର ଗୋଟିଏ ଭଉଣୀକୁ ବୋହି ନେଇଗଲା ।" ଏହା ଶୁଣିଲାମାତ୍ରକେ ସମସ୍ତ ଗ୍ରାମବାସୀ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ହୋଇ (ଯେପରି କି ଯଥାର୍ଥରେ ବଣର ରାଜା ସଙ୍ଗେ ଲଢ଼େଇ କରିବାକୁ ଯାଉଅଛନ୍ତି) ସେହି ଯୁବତୀବର୍ଗଙ୍କ ସହିତ ଘଟଣାସ୍ଥଳରେ ଉପସ୍ଥିତ ହୋଇ କେହି କହେ, ଏଠାରେ

ଘୋଷର୍ ଚିହ୍ନ ଅଛି; କେହି କେହି ବା କହନ୍ତି, ଏଠାରେ ଲୁଗାଟା ପଡ଼ିଛି, ଏଠାରେ ହାତଟା ପଡ଼ିଛି, ଏହିପରି କହି କହି ବାଘକୁ ଖୋଜି ଖୋଜି ଅବଶେଷରେ ଯୁବକର ଗ୍ରାମକୁ ଆସି ତାହାର ଘରେ ପହଞ୍ଚିଲା ମାତ୍ରକେ ଉକ୍ତ ପ୍ରହସନର ଶେଷ କରିବାକୁ ଯାଇ କହନ୍ତି, "ଏଠାରେ କଣ୍ଢାଉଛି ପଡ଼ିଛି, ସେ ଦୁଷ୍ଟ ନିଶ୍ଚୟ ଏହିଠାରେ ଲୁଚିଛି ।" ଏହା ପରେ ତାହାର କହି ତାହାର ରକ୍ତ ଦାବି କରନ୍ତି ଏବଂ ଗ୍ରାମର ପୁରୁଖାମାନଙ୍କୁ ଡାକି ଯେଉଁ ନିର୍ବୋଧ ବାଳକ ସେମାନଙ୍କର ଗୋଟିଏ ବାଳିକାର ସ୍ୱାଧୀନତା ହରଣ କରିଅଛି ଏହାର ପ୍ରତିଫଳ ଦେବାପାଇଁ ତାକୁ ଛାଡ଼ି ଦେବାକୁ ଅନୁରୋଧ କରନ୍ତି । ପୁରୁଖାଲୋକମାନେ ସେ ଯୁବକର ପକ୍ଷ ଗ୍ରହଣ କରି ମତ ପ୍ରକାଶ କରନ୍ତି ଯେ "ସେ ପ୍ରକୃତରେ ଦୋଷ କରିଅଛି, କିନ୍ତୁ ଯାହା ହେବାର ଥିଲା ତାହା ହେଲାଣି, ଏବେ ସେ ଦୁହିଙ୍କ ମଧ୍ୟରେ ବିବାହ ହେଉ । ତୁମ୍ଭେମାନେ ଯେ ତାହାର ରକ୍ତ ମାଗୁଅଛ, ସେଥିପାଇଁ ସେ ଟଙ୍କା ଓ ସମସ୍ତଙ୍କୁ ଭୋଜି ଦେବ ।" ଏହି କଥାଦ୍ୱାରା ପ୍ରତିହିଂସା-ଲିପ୍ସୁ ଯୁବକମାନଙ୍କର ଛଳନାସୂଚକ କୋପ ପ୍ରଶମିତ ହୁଏ । ସେମାନେ ଆନନ୍ଦରେ ସବିଧିରେ ବିବାହ କାର୍ଯ୍ୟ ସମ୍ପନ୍ନ କରିବାକୁ ଯାଇ ନୃତ୍ୟ ଆରମ୍ଭ କରନ୍ତି ।

ଉପରୋକ୍ତ ଖୋଜିବା କାର୍ଯ୍ୟ ଯେପରି ଠିକ୍ ଗୋଟିଏ ମନୁଷ୍ୟଙ୍କୁ ବାଘ ନେଇ ଗଲେ ଖୋଜାଯାଏ, ସେହିପରି ସମ୍ପନ୍ନ ହୁଏ । ଯେଉଁ ପରିବାରର ବାଳିକା ଅପହୃତ ହୋଇଥାଏ, ସେ ପରିବାର ଦୁଃଖ ପ୍ରକାଶ କରି କ୍ରନ୍ଦନ ମଧ୍ୟ କରନ୍ତି । ଗ୍ରାମବାସ-

ମାନଙ୍କର ଖୋଜିବା କାର୍ଯ୍ୟ ଏତେ ଉତ୍ସାହ ସହିତ ସମ୍ପାଦିତ ହୁଏ ଯେ, ଅବଶେଷରେ ଯଥାର୍ଥରେ ବାଘକୁ ମାରଲେ ବୋଲି ସମସ୍ତେ ଜ୍ଞାନ କରନ୍ତି । (୪) କନ୍ୟାଲାଭ ପାଇଁ ଅଭି ଏକ ଉପାୟ ମଧ୍ୟ ଅବଲମ୍ବିତ ହୁଏ । ଏହା ଅତି କଷ୍ଟରଭାବରେ ସମ୍ପାଦିତ ହୁଏ, ତେବେ ଏହା ଅତି ସରଳ । ଅନ୍ୟାନ୍ୟ ଉପାୟ ଅବଲମ୍ବନ କରି ବିମୁଖ ହେଲେ ଶେଷରେ ଏ ଉପାୟର ଆଶ୍ରୟ ନେବାକୁ ହୁଏ । ଗୋଟିଏ ଯୁବକର କୌଣସି ଯୁବତୀ ପ୍ରତି ସ୍ନେହ ଜନ୍ମିଲେ ସେ ଯୁବତୀ ଯେବେ ଅନିଚ୍ଛା ପ୍ରକାଶ କରେ କିମ୍ବା ତାହାର ଅଭିଭାବକମାନଙ୍କର ମତାନ୍ତର ଥିଲେ ସେମାନେ ଯଦି ବାଧା ଜନ୍ମାନ୍ତି, ତେବେ ସେ ଯୁବକ ଆପଣା ସଙ୍ଗିମାନଙ୍କୁ ଧରି ଲୁକ୍କାୟିତ ଭାବରେ ଯୁବତୀର ଗ୍ରାମକୁ ଯାଇ ପାଣିଘାଟ ଜଗି ରହେ । ସେ ଯୁବତୀ ପାଣି ନେବାକୁ ଆସିଲେ ଯୁବକଦଳ ବଳପୂର୍ବକ ତାକୁ ସେମାନଙ୍କ ଗ୍ରାମକୁ ବହି ନେଇଯାନ୍ତି । ଏହି ସମ୍ବାଦ ପାଇ କନ୍ୟାପିତା ଆପଣା ଗ୍ରାମରୁ ବଳିଷ୍ଠ ଯୁବକମାନଙ୍କୁ ନେଇ ସେ କନ୍ୟାକୁ ଛଡ଼ାଇ ଆଣିବାକୁ ଯାଏ । ଉଭୟଦଳ ମଧ୍ୟରେ ଭୟାନକ ମାରପିଟ ହୁଏ । ଯଦି କନ୍ୟାପକ୍ଷ ଜୟଲାଭ କରନ୍ତି, ତେବେ ତାକୁ ନେଇ ଆସନ୍ତି । ଯଦି ପରାଜିତ ହୁଅନ୍ତି, ତେବେ ଛାଡ଼ି ଦେଇ ଆସନ୍ତି । ଏପରି ମାଡ଼ ମରାମରି ହୁଅନ୍ତି ଯେ, କେତେକ ଲୋକ ସାଂଘାତିକରୂପେ ଆହତ ହୁଅନ୍ତି । ଯେଉଁ ଗ୍ରାମରୁ କନ୍ୟା ନିଆଯାଏ, ସେ ଗ୍ରାମର ଲୋକସଂଖ୍ୟାକୁ ଦୃଷ୍ଟି ଦେଇ ବରପକ୍ଷ ଅଧିକ ଲୋକ ସଂଗ୍ରହ କରି ରଖିଥାନ୍ତି । ଏଣୁ ପ୍ରାୟ ଅନେକ ଘଟଣାରେ ବରପକ୍ଷ ଜୟଲାଭ କରନ୍ତି । ମାଝ

ଉକ୍ତ ସ୍ତ୍ରୀଲୋକଟି ସେ ଯୁବକର ଘରେ ନ ଖାଇବା ପର୍ଯ୍ୟନ୍ତ ଜାସ୍ତ-ଲାଭ ହେଲା ବୋଲି ବିବେଚିତ ହୁଏ ନାହିଁ । କାଳେ ବାପ-ଘରକୁ ଲୁଚି ପଳାଇବ, ଏହି ଭୟରେ ତାକୁ ଗୋଟିଏ ଘରେ ବନ୍ଦ କରି ରଖନ୍ତି । କେବଳ ଗ୍ରାମର ଚତୁରା ସ୍ତ୍ରୀମାନେ ତାହା ନିକଟକୁ ଯାଇ ଭାତ ଖାଇବାକୁ ତାକୁ ପ୍ରବର୍ତ୍ତାନ୍ତି । କେହି ୩-୪ ଘଣ୍ଟା, କେହି କେହି ଦିନେ ଦୁଇ ଦିନ ପରେ ଆୟତ୍ତାଧୀନ ହୁଅନ୍ତି । ଭାତ ଖାଇଲେ ବିବାହ ପରେ ସେ ଯେତେବେଳେ ଇଚ୍ଛା କରୁଥିବ, ବାପଘରକୁ ଯାଇ ପାରିବ, ଇତ୍ୟାଦି ପ୍ରଲୋଭନ-ଦ୍ୱାରା ତାହାର ମନ ଭୁଲାଇ ତାକୁ ମୁକ୍ତ କରି ଦିଅନ୍ତି । ଏହା କେବଳ କନ୍ୟାକୁ ରାଜି କରିବାକୁ କରାଯାଏ । ମାତ୍ର ଯେପର୍ଯ୍ୟନ୍ତ ବରପକ୍ଷ ଆପଣା ଶକ୍ତି ଅନୁଯାୟୀ ଦେଶକୁ ଭୋଜି ଦେଇ ନାହିଁ, ସେପର୍ଯ୍ୟନ୍ତ ବିବାହ କାର୍ଯ୍ୟ ସମ୍ପନ୍ନ ହୁଏ ନାହିଁ । ସ୍ତ୍ରୀମାନେ ଓ ଗ୍ରାମର ପୁରୋହିତ (ଯେ କି ଗ୍ରାମଦେବତାମାନଙ୍କୁ ପୂଜା କରି ବରକନ୍ୟାଙ୍କୁ ଆଶୀର୍ବାଦ କରେ) ଏହିମାନଙ୍କଦ୍ୱାରା ବିବାହ-କାର୍ଯ୍ୟ ବିଶେଷ ପରିମାଣରେ ଅନୁଷ୍ଠିତ ହୁଏ । ବର ଓ କନ୍ୟା ହଳଦି ଲଗାଇ ସ୍ନାନ କଲା ଉତ୍ତାରେ ନୂତନ ବସ୍ତ୍ର ଓ ଅଲଙ୍କାରରେ ବିଭୂଷିତ ହୋଇ ବେଦିରେ ବସନ୍ତି । ପିତା କିମ୍ବା ପିତା ନ ଥିଲେ ଅନ୍ୟ କେହି ସମ୍ପର୍କୀୟ ଲୋକ ଆପଣା ଦୁହିତାବା ଆତ୍ମୀୟା ହାତରେ ଗୋଟିଏ ଟଙ୍କା ଦେଇ କହେ, "ମୋର ଯାହା ଥିଲା ତାହା ଦେଇ ଆଶୀର୍ବାଦ କରୁଅଛି ଯେ, ତୁ ଭାଗ୍ୟବତୀ ଏବଂ ସ୍ୱାମୀର ବିଶ୍ୱାସୀ ହୋଇ ଘର କର ।" ଏହା ପରେ ଗ୍ରାମର ପୁରୁଷ ସ୍ତ୍ରୀମାନେ ବର କନ୍ୟା ମୁଣ୍ଡରେ ଅରୁଆ ଚାଉଳ ପକାଇ ଆଶୀର୍ବାଦରେ ବନ୍ଦାଇ ଉଠାଇ ନେଇଯାନ୍ତି । ବର ଓ କନ୍ୟା

ଯେଉଁ ଦିନେ ରହନ୍ତି, ପୂର୍ବରୁ ଗ୍ରାମର ପୁରୋହିତ (ଦେହୁରି) ସେ ଘରକୁ ପ୍ରତିଷ୍ଠା କରେ । ଦୁଧ ଓ ଅରୁଆ ଚାଉଳଦ୍ୱାରା ଦେବତାମାନଙ୍କୁ ପୂଜା କରେ ଓ ଗୋଟିଏ ମାଟିପାତ୍ରରେ ଫୁଲ ପୂରାଇ ଘରର ଏକପାର୍ଶ୍ୱରେ ରଖିଦିଏ । ଏହି ମାଟିପାତ୍ର ତଳେ ପୂର୍ବପୁରୁଷମାନଙ୍କର ଆତ୍ମା ରହିଲେ ବୋଲି ଜ୍ଞାନ କରାଯାଏ । ବର ଓ କନ୍ୟା ପ୍ରତିଦିନ ତାହାକୁ ସେଠାରେ ପୂଜା କରନ୍ତି । କନ୍ୟାପିତା ଆପଣା ଶକ୍ତି ଅନୁସାରେ ଯୌତୁକ ମଧ୍ୟ ଦିଏ । ଧନୀ ଲୋକ ହେଲେ ଗାଈ, ବଳଦ, ଛେଳି ଓ ମେଣ୍ଢା ପ୍ରଭୃତି ଦିଆଯାଏ । ହିନ୍ଦୁମାନଙ୍କ ପରି ବିବାହକାର୍ଯ୍ୟ କନ୍ୟାଗୃହରେ ନ ହୋଇ ବରଗୃହରେ ସମ୍ପନ୍ନ ହୁଏ ।

ଦେଶଭୁୟାଁମାନଙ୍କ ମଧ୍ୟରୁ ଯେଉଁମାନେ ହିନ୍ଦୁମାନଙ୍କ ସଙ୍ଗେ ବାସ କରନ୍ତି ଓ ହିନ୍ଦୁରୀତି ଅନୁସାରେ ଚଳିବାକୁ ଇଚ୍ଛା କରନ୍ତି, ସେମାନଙ୍କ ମଧ୍ୟରେ ପିତା ମାତା ବର କନ୍ୟା ମନୋନୀତ କରି ବିବାହ ଦିଅନ୍ତି । ମାତ୍ର ଏହା ଅତି ବିରଳ । ଅଧିକାଂଶ ଉପରୋକ୍ତ ପ୍ରଥାଗୁଡିକ ଅନୁସରଣ କରନ୍ତି । ସ୍ତ୍ରୀ ଓ ପୁରୁଷଙ୍କର ପରସ୍ପର ମନୋମାଳିନ୍ୟ ଘଟିଲେ ବିବାହବନ୍ଧନ ମଧ୍ୟ ଛେଦନ କରାହୁଏ । ବ୍ୟଭିଚାର ଦୋଷରେ ସ୍ୱାମୀ ସ୍ତ୍ରୀକୁ ଛାଡ଼ପତ୍ର (divorce) ଦିଏ । ସ୍ତ୍ରୀର ବ୍ୟଭିଚାର ଦୋଷ ସମାଜ ମଧ୍ୟରେ ପ୍ରକାଶିତ ହେଲେ ସ୍ୱାମୀ ତାହାକୁ ଛାଡ଼ି ନ ଦେବା ପର୍ଯ୍ୟନ୍ତ ଅଜାତି ହୋଇ ରହେ । ଯଦି କୌଣସି ସ୍ତ୍ରୀ ଆପଣା ଜାତି ମଧ୍ୟରେ ପାପପ୍ରଣୟ କରଥାଏ, ତେବେ ସେ ଅଜାତି ନ ହୋଇ ସେ ପୁରୁଷର ଘରେ ରହେ ଓ ସେ ପୁରୁଷ ତାକୁ ସ୍ତ୍ରୀରୂପେ ରଖିବାକୁ ବାଧ୍ୟ ହୁଏ ।

ମାନ ଆପଣା ଜାତି ନ ହୋଇ ପୃଥକ୍ ଜାତି ହୋଇଥିଲେ ଉକ୍ତ ସ୍ତ୍ରୀ ଆଜୀବନ ପତିତା ହୋଇ ସମାଜରୁ ତାଡ଼ିତା ହୁଏ । ଭୂୟାଁମାନଙ୍କ ମଧ୍ୟରେ ସତୀତ୍ୱ ଧର୍ମ ବୋଲି ବିବେଚିତ ହୁଏ ନାହିଁ । କିନ୍ତୁ କୌଣସି ଯୁବତୀ ବ୍ୟଭିଚାରିଣୀ ପ୍ରମାଣିତ ହେଲେ ଗ୍ରାମର ପୁରୁଣା ପୁରୁଷ ଓ ସ୍ତ୍ରୀମାନଙ୍କଦ୍ୱାରା ଗୋଟିଏ ପଞ୍ଚାୟତ୍ ବସେ । ଉକ୍ତ ପଞ୍ଚାୟତରେ ସେ ସ୍ତ୍ରୀଟି କେଉଁ ଲୋକଦ୍ୱାରା ନଷ୍ଟ ହୋଇଅଛି ବୋଲି ପ୍ରଶ୍ନ କରାଯାଏ । ସେ ଯାହାର ନାମ କହେ, ସେ ପୁରୁଷକୁ ତାକୁ ଗଡେଇ ଦେଇ (କ୍ଷମା କରିଦେଇ) ଏହି ପରି କହନ୍ତି, "ଏହା ଆମ୍ଭମାନଙ୍କର ଦୋଷ ଯେ ତୁମ୍ଭମାନଙ୍କର ବିବାହ ପୂର୍ବରୁ କରା ହୋଇ ନ ଥିଲା । ତେବେ ରକ୍ତମାଂସ ଶରୀରରେ ଏପରି ଘଟଣା ଘଟିଥାଏ ।" ଭୂୟାଁମାନେ ଦୃଢ଼-ବୟସରେ ବିବାହବନ୍ଧନରେ ଆବଦ୍ଧ ଥାନ୍ତି । ବ୍ୟଭିଚାର ଓ ଗର୍ଭପାତ କ୍ୱଚିତ୍ ଦୃଷ୍ଟିଗୋଚର ହୁଏ । ସ୍ତ୍ରୀ ପୁରୁଷର ଖାଦ୍ୟପାନାଦି ବିଷୟରେ ଯତ୍ନ କରେ ଏବଂ ସମସ୍ତ ଗୃହକର୍ମ କରି ଆବଶ୍ୟକ ହେଲେ କୃଷିକର୍ମରେ ମଧ୍ୟ ସାହାଯ୍ୟ ଦିଏ । ସ୍ୱାମୀ ସହ ଫଳମୂଳ ଆହରଣାର୍ଥେ ଜଙ୍ଗଲ ମଧ୍ୟକୁ ଯାଏ । ବହୁବିବାହ ଓ ବିଧବା-ବିବାହ ସେମାନଙ୍କ ମଧ୍ୟରେ ପ୍ରଚଳିତ ଅଛି, ମାତ୍ର ବିରଳ ଦେଖାଯାଏ ।



## ଜନ୍ମ ମୃତ୍ୟୁ ।



ଜନ୍ମୋତ୍ସବ ଅତି ସାମାନ୍ୟଭାବରେ ଅନୁଷ୍ଠିତ ହୁଏ । କେବଳ ଜନ୍ମର ଦଶମ ଦିନ ଜ୍ଞାତି ଓ ବନ୍ଧୁମାନଙ୍କୁ ଗୋଟିଏ ଭୋଜି ଦିଆଯାଏ । ଏହାଦ୍ୱାରା ମାତା ଓ ପରିବାର ଶୁଦ୍ଧ ହୁଅନ୍ତି । ଦେଶୀଭୂୟାଁମାନଙ୍କ ମଧ୍ୟରୁ ଯେଉଁମାନେ ପ୍ରଗଣାରେ ବାସ କରନ୍ତି, ସେମାନେ କ୍ଷୌର ପାଇଁ ଭଣ୍ଡାରି ଓ ବସ୍ତ୍ର ପରିଷ୍କାର ପାଇଁ ରଜକ ଆବଶ୍ୟକ କରନ୍ତି । ମାତ୍ର ଯେଉଁମାନେ ଭୂୟାଁପୀଢ଼ରେ ରହନ୍ତି, ସେମାନଙ୍କ ମଧ୍ୟରୁ ଜଣେ କ୍ଷୌରକାର୍ଯ୍ୟ ନିର୍ବାହ କରନ୍ତି । ବସ୍ତ୍ର ଧୋଇବା ସେମାନେ ଆବଶ୍ୟକ ମନେ କରନ୍ତି ନାହିଁ । ଯଦି ପ୍ରସବ ପୂର୍ବରୁ କୌଣସି ଗର୍ଭବତୀ ସ୍ତ୍ରୀ ମରିଯାଏ, ତେବେ ଏହା ପାପ ବୋଲି ବିବେଚିତ ହୁଏ । ମୃତସନ୍ତାନକୁ ଶବ ଦେହରୁ କାଟି ଗୋଟିଏ ଗିରିନଦୀର ଉଭୟ ପାର୍ଶ୍ୱରେ ମାତା ଓ ସନ୍ତାନକୁ ପୃଥକ୍ ପୃଥକ୍ ପୋତି ଦେଲେ ଉକ୍ତ ପାପରୁ ମୁକ୍ତି ଲଭନ୍ତି । ଆଉ ମଧ୍ୟ ଏହାଦ୍ୱାରା ମୃତ ମାତା ଡ଼ାକିନୀ ହୋଇ ଗ୍ରାମବାସୀ ଅପର ସ୍ତ୍ରୀ ଓ ସନ୍ତାନମାନଙ୍କ ପ୍ରତି ଅତ୍ୟାଚାର କରିବା ଭୟ ଦୂର ହୁଏ । କାରଣ କୌଣସି ପ୍ରେତାତ୍ମା ନଦୀ ପାର ହୋଇ ପାରେ ନାହିଁ ଏବଂ ମୃତ ମାତାର ଆତ୍ମା ତାହାର ମୃତ-ସନ୍ତାନର ଆତ୍ମା ସହ ମିଳିତ ନ ହେଲେ ଡ଼ାକିନୀ ହୋଇ ପାରିବ ନାହିଁ ଏହା ସେମାନଙ୍କର ବିଶ୍ୱାସ ।

କେହି ଭୂୟାଁ ମଲେ ତାହାର ଜ୍ଞାତିମାନେ ଶୀଘ୍ର ତାହାକୁ ଜଙ୍ଗଲ ମଧ୍ୟରେ ପୋତିଦିଅନ୍ତି । ଦଶମଦିନ ଗ୍ରାମବାସୀମାନଙ୍କ

ଗୋଟିଏ ଭୋଜି ଦେଲେ ଶୁଦ୍ଧିଲାଭ କରନ୍ତି । ମାତ୍ର ଜଣେ ପ୍ରଧାନ ଭୂୟାଁ ମରିଗଲେ ମୃତ୍ୟୁସମ୍ବାଦ ନିକଟବର୍ତ୍ତୀ ଗ୍ରାମମାନଙ୍କୁ ପଠାଇ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ ପାଇଁ ଗ୍ରାମବାସିମାନଙ୍କୁ ଡ଼କାନ୍ତି । ମୃତ୍ୟୁଦିବସରୁ ଦଶମଦିନ ପର୍ଯ୍ୟନ୍ତ ନିକଟ ସମ୍ପର୍କୀୟା ସ୍ତ୍ରୀମାନେ ଅତି କରୁଣସ୍ୱରରେ ମୃତ୍ୟୁକଥାସୂଚକ ସଙ୍ଗୀତ ବୋଲି କ୍ରନ୍ଦନ କରନ୍ତି । ଏହା ଯେ ଥରେ ଶୁଣିଅଛି, ସେ ତାହା ଚିରଦିନ ମନରୁ ବିସ୍ମରଣ କରିବ ନାହିଁ । ଦେଶର ସମସ୍ତ ଲୋକେ ଏକତ୍ରିତ ହୋଇ ଦଶମ ଦିନ ଭୋଜି ଖାନ୍ତି ଏବଂ ମୃତବ୍ୟକ୍ତିର ଉତ୍ତରାଧିକାରୀ ନିଯୋଗ କରନ୍ତି । ସାଧାରଣତଃ ଜ୍ୟେଷ୍ଠପୁତ୍ର ଉତ୍ତରାଧିକାରୀରୂପେ ମନୋନୀତ ହୁଏ ।

କେବଳ ଗର୍ଭବତୀ ସ୍ତ୍ରୀର ଶବ ଛଡ଼ା ଅନ୍ୟ ସମସ୍ତ ଶବକୁ ପୋଡ଼ନ୍ତି । ଭୂୟାଁମାନେ ଅତ୍ୟନ୍ତ କଷ୍ଟ ସ୍ୱୀକାର କରି ଶବକୁ ସ୍ୱତନ୍ତ୍ରରୂପେ ଗଭୀର ଗର୍ତ୍ତ ଖୋଳି ପୋତନ୍ତି । ଗର୍ତ୍ତ ଉପର ଉତ୍ତମରୂପେ ତୀକ୍ଷ୍ଣ କଣ୍ଟକଦ୍ୱାରା ଆଚ୍ଛାଦିତ କରି ଦିଅନ୍ତି, ଯେପରି ବନ୍ୟଜନ୍ତୁମାନେ ମୃତଦେହକୁ ବାହାର କରି ନ ପାରିବେ । ଜଙ୍ଗଲ ମଧ୍ୟରେ ଥିବା ଯୋଡ଼ ବା ନାଳ ଶବ ପୋତାଯିବାର ପବିତ୍ର ସ୍ଥାନ ବୋଲି ବିବେଚିତ ହୁଏ । କାରଣ, ଯେଉଁ ବୈତରଣୀ ସେମାନଙ୍କ ବାସସ୍ଥଳୀର ପାହାଡ଼ମାନଙ୍କ ପାଦଦେଶ ଦେଇ ପ୍ରବାହିତ ହେଉଅଛି, ସମସ୍ତ ଝରଣା ସେହି ପବିତ୍ରନଦୀ ବୈତରଣୀରେ ମିଶୁଅଛନ୍ତି ।

ମୃତ୍ୟୁସମ୍ପର୍କୀୟ ଭୋଜି ଦେବା କାର୍ଯ୍ୟ ନିର୍ବାହ ହେବାର ଅବ୍ୟବହିତ ପରେ ମୃତ ଲୋକର ଜ୍ଞାତିମାନେ ତାହାକୁ

ସେମାନଙ୍କର ପୂର୍ବପୈତୃକ ଦେବତା ସହ ସ୍ଥାନ ଦେବା କାର୍ଯ୍ୟ ଆରମ୍ଭ କରନ୍ତି । ସମସ୍ତେ ଘର ମଧ୍ୟରେ ଯାଉ ଯାଉ ବୋଲି ବସନ୍ତି, ଗୋଟିଏ ବୋଦା ବଳି ଦିଆଯାଏ । ରକ୍ତ ଗୃହର ( ଯାହା ବିଷୟରେ ଅନ୍ୟ ଅଂଶରେ କୁହାଯିବ ) ସମସ୍ତ ପାଦ-ଦେଶରେ ଢଳାଯାଏ । ଏହା ଉତ୍ତାରେ ସମସ୍ତେ ସ୍ୱର ଧରି ପିତୃମାନଙ୍କୁ ଡାକନ୍ତି ଓ ମୃତଲୋକଙ୍କୁ ସେମାନଙ୍କ ନିକଟରେ ସ୍ଥାନ ଦେବାକୁ ପ୍ରାର୍ଥନା କରନ୍ତି । ଗୋଟିଏ ପିଲା ମଲେ ବୋଦା ପରିବର୍ତ୍ତେ ଗୋଟିଏ କୁକ୍କୁଟ ବଳି ଦିଆଯାଏ । ସମସ୍ତ ଘଟଣାରେ ରକ୍ତ ଦେବାର ବିଧି ଅଛି ଏବଂ ଯେଉଁ ଜଳ ଦେବତାଙ୍କ ନିକଟରେ ରଖା ହୋଇଥାଏ, ତାହା ସମସ୍ତ ଜ୍ଞାତିଙ୍କ ଉପରେ ସିଞ୍ଚାଯାଏ । ଏହା ନ ହେଲେ ସେମାନେ ଶୁଦ୍ଧି ଲାଭ କରନ୍ତି ନାହିଁ । କେବଳ ଦୁଇଗୋଟି ଘଟଣାରେ ଉପରୋକ୍ତ କାର୍ଯ୍ୟ କରାଯାଏ ନାହିଁ । ଯଦି କୌଣସି ସ୍ତ୍ରୀ ଗର୍ଭବତୀ ହୋଇ ମରେ ଅଥବା କେହି କୁଷ୍ଠରୋଗରେ ମରେ, ସେମାନେ କେହି ପିତୃଗଣଙ୍କ ନିକଟରେ ସ୍ଥାନ ପାଇ ପାରନ୍ତି ନାହିଁ । କୁଷ୍ଠରୋଗୀ ଅତି ଘୃଣ୍ୟ ବିବେଚିତ ହୁଏ ଏବଂ ସେ ଅତି ଉତ୍କଟ ପାପ କରିଥିବାରୁ ଦେବତା ତାହାଠାରେ କୋପ କରିଥିବାର ଚିହ୍ନ-ରୂପେ କୁଷ୍ଠରୋଗ ହେବା କଥା ଭୂୟାଁମାନେ ବିଶ୍ୱାସ କରନ୍ତି । ଯାହାଠାରେ ଏ ରୋଗ ହୁଏ, ସେ ଗ୍ରାମର ବାହାରେ ଘର କରି ରହେ ଏବଂ ଯେଉଁ ଘାଟରେ ଗ୍ରାମବାସିମାନେ ସ୍ନାନ କରନ୍ତି, ସେ ସେଠାରେ ସ୍ନାନ ନ କରି ତଳେ ଗୋଟିଏ ପୃଥକ୍ ଘାଟରେ ସ୍ନାନ କରେ ।

---

# ଅସ୍ତ୍ର ଶସ୍ତ୍ର ।



ଭୂୟାଁମାନଙ୍କର ଅସ୍ତ୍ରରକ୍ଷାର୍ଥ ପ୍ରଧାନ ଅସ୍ତ୍ର ଧନୁ ଓ ତୀର । ଏଦ୍ୱାରା ସେମାନେ ସୁନ୍ଦରରୂପେ ଲକ୍ଷ୍ୟ ବିନ୍ଧି ପାରନ୍ତି । କେତେକ ତୀରର ଫଳକ ଘାତକ ଅଧାତୁ ହୁଏ, ଧନୁ ପାକଳ ବାଉଁଶରେ ନିର୍ମିତ ହୁଏ । କେତେକ ମଧ୍ୟ ଅନ୍ୟପ୍ରକାର ନମନଶୀଳ କାଷ୍ଠରେ ହୋଇଥାଏ । ଗୁଣ ପଶୁଚର୍ମରେ ନ ହୋଇ ବାଉଁଶ ପାତିଆରେ ହୋଇଥାଏ ଓ ଶେଷଭାଗ ଚର୍ମଦ୍ୱାରା ଧନୁରେ ଲାଗିଥାଏ । ପକ୍ଷୀ ଓ ଅନ୍ୟ କ୍ଷୁଦ୍ର ଜନ୍ତୁ ମାରିବାପାଇଁ ତୀରର ଅଗ୍ରଭାଗରେ ଲୌହଫଳକ ପରିବର୍ତ୍ତେ କାଷ୍ଠ ଦିଆଯାଇଥାଏ । ଧନୁ ଓ ତୀର ସଙ୍ଗରେ ଟାଙ୍ଗିଆ ମଧ୍ୟ ଥାଏ । କୌଣସି ଭୂୟାଁ ଧନୁ, ତୀର ଓ ଟାଙ୍ଗିଆ ଛଡ଼ା ଅରଣ୍ୟକୁ ଯାଏ ନାହିଁ । ଜନ୍ତୁର ଗଳଦେଶକୁ ସେମାନେ ଆଗରୁ ସହଜ ଲକ୍ଷ୍ୟ କରି ତୀର ଛାଡ଼ନ୍ତି, ଏତେ ବଳରେ ବିନ୍ଧନ୍ତି ଯେ ପ୍ରାୟ ତୀରର ସମସ୍ତ ଅଂଶ ଜନ୍ତୁ ଦେହରେ ପ୍ରବେଶ କରେ । ପକ୍ଷୀ ଶିକାର ସାଧାରଣତଃ ରାତିରେ ହୁଏ । ଯେଉଁ ଗଛରେ ପକ୍ଷୀ ବିଶ୍ରାମ କରନ୍ତି, ସେମାନେ ଦିନବେଳେ ଅନୁସନ୍ଧାନ କରିଥାନ୍ତି । ସନ୍ଧ୍ୟାବେଳେ ଶିକାରୀ ଆସେ ଗଛ ଉପରେ ଡାଳି 'ହୁଳା'ଦ୍ୱାରା ଚତୁର୍ଦ୍ଦିଗ ଆଲୋକିତ କରିଦିଏ । ଏଦ୍ୱାରା ପକ୍ଷୀମାନେ କଳକା ହୋଇଯାନ୍ତି ଓ ଶିକାରୀଙ୍କୁ ଲକ୍ଷ୍ୟସ୍ଥାନ ମଧ୍ୟ ଦେଖାଯାଏ ।

କାଣ୍ଡ ବାଢ଼ୁଣୀ ଓ ଠାଙ୍ଗିଆ ଛଡ଼ା ସେମାନେ ବକ୍ରାକୃତ ଖଡ୍ଗ, ଛୁରିକଣୀ ଏବଂ ସ୍ୱନ୍ଦଗରୂପେ ନିର୍ମିତ ଲୌହଚକ୍ର ବ୍ୟବହାର କରନ୍ତି । ଏହି ଲୌହଚକ୍ରର ବ୍ୟାସ ୬ ଇଞ୍ଚରୁ ୮ ଇଞ୍ଚ ପର୍ଯ୍ୟନ୍ତ ଏବଂ ତାହାର ଧାର ଅତି ଦକ୍ଷତା ସହିତ ତୀକ୍ଷ୍ଣଧାର କରା ହୋଇ-ଥାଏ । ଏହାର ବ୍ୟବହାର ଅତି ଆଶ୍ଚର୍ଯ୍ୟଜନକ ଅଟେ । ଯେତେଦୂର ପର୍ଯ୍ୟନ୍ତ ଦୃଷ୍ଟି ଯାଏ, ତେତେଦୂର ପର୍ଯ୍ୟନ୍ତ ଏହାକୁ ତର୍ଜନୀ ଅଙ୍ଗୁଳିରେ ଘୂରାଇ ଘୂରାଇ ଛାଡ଼ି ଦିଅନ୍ତି । ଧନୁ ଯେଉଁ ଦିଗକୁ ପଡ଼େ, ସେହି ଦିଗକୁ ଗଲେ ଜୟ ହେବ ବୋଲି ବିଶ୍ୱାସ କରି ଗମନ କରନ୍ତି । ଗତ ବିଦ୍ରୋହରେ ମଧ୍ୟ ସେମାନେ ଏହି ପ୍ରଥା ଅବଲମ୍ବନ କରିଥିଲେ ।

ଅସ୍ତ୍ର ଛଡ଼ା ସେମାନଙ୍କର କେତେକ ବାଦ୍ୟଯନ୍ତ୍ର ଅଛି । ଯାହା ଉତ୍ସବାଦିରେ, ଯୁଦ୍ଧଯାତ୍ରାରେ ଏବଂ ପ୍ରଧାନ ବିବାହରେ ବ୍ୟବହୃତ ହୁଏ । ଯୁଦ୍ଧପାଇଁ ଆହ୍ୱାନ କଲେ ବା କୌଣସି ବିଷୟ ଗ୍ରାମରେ ନିଷେଧ କରିବାକୁ ହେଲେ 'ଶିଙ୍ଗା' ବ୍ୟବହାର କରନ୍ତି । ମାତ୍ର ଏକପ୍ରକାର ବାଦ୍ୟ ସକଳ ଉତ୍ସବାଦିରେ ନୃତ୍ୟ କଲା ବେଳେ ବ୍ୟବହୃତ ହୁଏ । ଖଞ୍ଜନି ଆକୃତି ପରି ଅତି ବୃହଦାକାର ଗୁଙ୍ଗୁ ନାମକ ବାଦ୍ୟ ସେମାନଙ୍କର ପ୍ରିୟ ବାଦ୍ୟ-ଯନ୍ତ୍ର ଅଟେ ।



# ଗ୍ରାମ ।



ପ୍ରାୟ ପ୍ରତ୍ୟେକ ଭୂୟାଁ ଗ୍ରାମ ଦୁଇ ସାହାଡ଼ା ଅର୍ଥାତ୍ ଧାଡ଼ିରେ ବସିଥାଏ । ମଝିରେ ପ୍ରଶସ୍ତ ଦାଣ୍ଡ ଥାଏ । ଗୋଟିଏ ଘର ଅନ୍ୟ ଘରକୁ ନ ଲାଗି ପୃଥକ୍ ଭାବରେ ଅବସ୍ଥିତ ହୋଇଥାଏ । ଶତ୍ରୁ କିମ୍ବା ହିଂସ୍ରଜନ୍ତୁମାନଙ୍କ ଆକ୍ରମଣର ଭୟ ହେଲେ ସମସ୍ତ ଗ୍ରାମବାସୀ ଶୀଘ୍ର ମାନଙ୍କ ଘରୁ ବାହାର ଦାଣ୍ଡରେ ଯେପରି ଅଳ୍ପ ସମୟ ମଧ୍ୟରେ ଏକତ୍ରିତ ହୋଇ ପାରିବେ, ସେହିପରି ଭାବରେ ଗ୍ରାମଟି ବସିଥାଏ । ଗୃହଗୁଡ଼ିକ ବଡ଼ ନ ହୋଇ କୁଡ଼ିଆଘର ପରି କ୍ଷୁଦ୍ରାକାରରେ ଗଠିତ । ଧନୀ ଲୋକର ଗୃହ ବ୍ୟତୀତ ସାଧାରଣ ଗୃହରେ ମାଟିର କାନ୍ଥ ଥାଏ । ଯେପରି କୂପମାନଙ୍କରେ କାଠ ବସେ, ସେହିପରି ଲମ୍ବଭାବରେ ଗୋଟିଏ ଉପରେ ଗୋଟିଏ କାଠ ଥୋଇ ଥୋଇ ଉପରକୁ ଉଠାଇ ନଅନ୍ତି । ଉତର ପାଖ ସନ୍ଧିମାନଙ୍କରେ ମାଟି ଦେଇଥାନ୍ତି । ଗୃହଗୁଡ଼ିକ ଅତି ଯତ୍ନରେ ପରିଷ୍କାର ରଖିଥାନ୍ତି ।

ଗ୍ରାମମାନ ଝଙ୍କାଳିଆ ପଣସଗଛମାନଙ୍କଦ୍ୱାରା ବେଷ୍ଟିତ ହୋଇ ଗୋଟିଏ ଗୋଟିଏ ପର୍ବତର ପାଦଦେଶରେ (ଯେଉଁଠାକୁ ବର୍ଷାପାଣି ଯାଇ ନ ପାରେ କିମ୍ବା ଯାହା ନିକଟରେ ସୁନ୍ଦର କାଠମାନ ଥାଏ ସେହିପରି ସ୍ଥାନମାନଙ୍କରେ) ସ୍ଥାପିତ ହୋଇଥାଏ । ଗୋଟିଏ ଗୋଟିଏ ଗ୍ରାମ ଗୋଟିଏ ଗୋଟିଏ ହୁଡ଼ା ଉପରେ ଥାଏ । ଯେଉଁ ସ୍ଥାନରେ ଗୋଟିଏ କିମ୍ବା ଅଧିକ ଝରଣା ବା ଛୋଟନଦୀ

ପ୍ରବାହିତ ହୋଇ ନ ଥାଏ. ସେଠାରେ ସେମାନେ ବାସଭୂମି କରନ୍ତି ନାହିଁ । ପ୍ରାୟ ସମସ୍ତ ଗ୍ରାମରେ ପ୍ରଧାନ ଘର ମଧ୍ୟସ୍ଥଳରେ ଥାଏ ଓ ଏହା ଗୃହ ପାଖରେ ବୃହତ୍ ବୃହତ୍ ପଣସ ଗଛ ରହି-ଥାଏ । ଏଗୁଡ଼ିକ ଭୂୟାଁମାନେ ଗ୍ରାମଦେବତାଙ୍କୁ ଦେଇଥାନ୍ତି । ଭୂୟାଁମାନେ ପଣସର ଅତି ପ୍ରିୟ । ଯେଉଁଠାରେ ପଣସ ଗଛ ଭଲ ନ ହୁଏ କମ୍ବା ଫଳ ବିଶେଷରୂପେ ନ ଧରେ, ସେମାନେ ସେ ସ୍ଥାନ ଛାଡ଼ି ଦେଇ ଅନ୍ୟ ଉତ୍କୃଷ୍ଟ ଭୂମି ମନୋନୀତ କରନ୍ତି । ପ୍ରଧାନର ଘର ନିକଟରେ ଗୋଟିଏ ବୃହତ୍ ଝୁଙ୍କାଳିଆ ଛାୟାପ୍ରଦ ବୃକ୍ଷ ତଳେ ଦରବାର ବା ମଣ୍ଡପଘର ନିର୍ମିତ ହୋଇ-ଥାଏ । ଏହା ଅତିଥିଶାଳା ଅଟେ । ଗ୍ରାମର ସମସ୍ତ ଗୃହ ଅପେକ୍ଷା ଏହା ଅତି ବୃହତ୍ ଓ ସୁନ୍ଦରରୂପେ ଗଠିତ । ଏହା ସମ୍ମୁଖରେ ଅତି ପ୍ରଶସ୍ତ ନୃତ୍ୟଭୂମି । ଗଛ ମୂଳରେ ବସିବାକୁ ଗୋଟିଏ ପଟା ଭାଡ଼ି ଥାଏ । ଘର ନିକଟରେ ବଡ଼ ବଡ଼ କାଠଗଣ୍ଡି ଦ୍ୱାରା ସମସ୍ତ ଦିନ ଓ ରାତି ଗୋଟିଏ ଧୂନି ଲାଗିଥାଏ । ଏହାର କାଠ ଯୋଗାଇବା ଭାର ଧାଙ୍ଗଡ଼ାମାନଙ୍କ (ଅବିବାହିତ ଯୁବକ) ଉପରେ ଥାଏ । ସେମାନେ କାମରୁ ଫେରିବା ସମୟରେ ପ୍ରତ୍ୟେକ ଧାଙ୍ଗଡ଼ା ଗୋଟିଏ ଲେଖାଏ ଗଣ୍ଡି କାନ୍ଧରେ ବହି ଆଣି ଉକ୍ତ ଘରକୁ ଭେଟି ଦେଇଥାନ୍ତି । ଧାଙ୍ଗଡ଼ୀମାନଙ୍କ ( ଅବିବାହିତା ଯୁବତୀ) ଉପରେ ମଣ୍ଡପଘର ଲିପିବା କାର୍ଯ୍ୟ ନ୍ୟସ୍ତ ଥାଏ । ସେମାନେ ଅଗ୍ରହସହକାରେ ଉକ୍ତ ଘରକୁ ସର୍ବଦା ପରିଷ୍କାର ରଖିଥାନ୍ତି ।

ଧାଙ୍ଗଡ଼ା ଓ ଧାଙ୍ଗଡ଼ୀମାନେ ସମସ୍ତ ଦିନ ପରିଶ୍ରମ କରି ସନ୍ଧ୍ୟା ସମୟରୁ ଭୋଜନ କରି ଭୂୟାଁପୀଢ଼ିର ଅତ୍ୟଧିକ ଶୈତ୍ୟ

ଓ ଗ୍ରୀଷ୍ମ ପ୍ରତି ଆସ୍ଥା ନ ରଖି ଆନନ୍ଦରେ ପ୍ରାପ୍ତ ସମସ୍ତ ନାଚ ନୃତ୍ୟରେ କଟାଇ ଦିଅନ୍ତି । ଦିନେ ଦିନେ ସକାଳ ଘଣ୍ଟାଏ ବା ଦୁଇ ଘଡ଼ି ବେଳ ପର୍ଯ୍ୟନ୍ତ ନୃତ୍ୟ ହେଉଥାଏ । ଧାଙ୍ଗଡ଼ା-ମାନେ ସମସ୍ତେ ନିଜ ଘରେ ନ ରହି ଉକ୍ତ ମଣ୍ଡପଘରେ ଶୁଅନ୍ତି ।

ପ୍ରତ୍ୟେକ ଭୂୟାଁ ପ୍ରତ୍ୟେକ ଫସଲ ଅମଳ କରି ଗୃହକୁ ଆଣିବା ସମୟରେ ପ୍ରଥମେ କିଛି କିଛି ମଣ୍ଡପଘରେ ଦେଇଯାଏ । ଏହି-ପରି ସମସ୍ତ ଗ୍ରାମବାସିମାନଙ୍କଦ୍ୱାରା ଏକତ୍ରିତ ଶସ୍ୟ ଶ୍ରେଷ୍ଠ ଓଳାଅ କମ୍ବା ଚିଅଢ଼ପତ୍ରଦ୍ୱାରା ଉତ୍ତମରୂପେ ବନ୍ଧା ହୋଇ ଉକ୍ତ ଘର ଛପରରେ ନିକ୍ଷିପ୍ତ ହୋଇଥାଏ । ବଡ଼ ବଡ଼ ଓଳାଆ ଗୃହର (ଗୃହର ଏକାଧାରରେ) ରଖା ହୋଇଥାଏ । କେହି ଅଗନ୍ତୁକ ଆସିଲେ ଗ୍ରାମର ପୁରୁଖା ସ୍ତ୍ରୀମାନେ ଉକ୍ତ ସଞ୍ଚିତ ଶସ୍ୟରୁ ତାଙ୍କର ଆହାର୍ଯ୍ୟ ପଦାର୍ଥ ଯୋଗାନ୍ତି । ପ୍ରତିଦିନ ପାଳି କରି ଦୁଇ ଜଣ କିମ୍ବା ବୃହତ୍ ଗ୍ରାମରେ ଚାରି ଜଣ ପର୍ଯ୍ୟନ୍ତ ଲୋକ ଉକ୍ତ ଗୃହ ନିକଟରେ ବସିଥାନ୍ତି । କେହି ଅତିଥି ବା ରାଜକର୍ମଚାରୀ ଉପସ୍ଥିତ ହେବା ମାତ୍ରକେ ଆଗ୍ରହ ସହିତ ତାଙ୍କର ସମସ୍ତ ଅଭାବ ଦୂର କରିବାରେ ବ୍ୟସ୍ତ ହୁଅନ୍ତି । ଏମାନଙ୍କଠାରୁ ଏପରି ସାହାଯ୍ୟ ମିଳେ ଯେ, ତାହା ନେତ୍ରଶ୍ରେଣୀ ଭୃତ୍ୟଠାରୁ ମିଳିବା କଠିନ । ଉକ୍ତ ବ୍ୟକ୍ତି ଅନ୍ୟ ସ୍ଥଳକୁ ଯିବା ପାଇଁ ଇଚ୍ଛା କଲେ ମାନଙ୍କେ ସେହି ପାଳିଆମାନେ ତାଙ୍କର ବୋଝ ବୋହି ନେଇ ଛାଡ଼ି ଦେଇଥାନ୍ତି । ଏଥିପାଇଁ ପଇସା ଗ୍ରହାନ୍ତି ନାହିଁ । ଦେଲେ ମଧ ଅଧିକାଂଶ ପାଳିଆ ନେବାକୁ ଇଚ୍ଛା କରନ୍ତି ନାହିଁ । ଗ୍ରାମର ବାହାର ସୀମାରେ ପାଣ ଓ କୋହ୍ଲମାନେ ବାସ କରନ୍ତି ।

ସେମାନେ ଅବହମାନକାଳରୁ ସେମାନଙ୍କ ସଙ୍ଗେ ରହି ଆସୁଅଛନ୍ତି । ପାଣମାନେ ଲୁଗା ବୁଣିବା ଓ ଉତ୍ସବାଦରେ ବାଦ୍ୟ ବଜାଇବା ଏବଂ ଡୋମ୍ବମାନେ ଗୋରୁଅଧ ମଲେ ଶବ ଉଠାଇବା ପ୍ରଭୃତି ନିକୃଷ୍ଟ କାର୍ଯ୍ୟମାନ କରନ୍ତି । ଭୂୟାଁମାନେ ଏମାନଙ୍କଠାରୁ ଜଳ କିମ୍ବା କୌଣସି ପ୍ରକାର ଖାଦ୍ୟଦ୍ରବ୍ୟ ସ୍ପର୍ଶ କରନ୍ତି ନାହିଁ ।

ଅଧିକାଂଶ ଗ୍ରାମ ନିକଟରେ ଗୋପାଳମାନଙ୍କର ବାସ ଥାଏ । କେହି କେହି ଅବହମାନକାଳରୁ ଗୃହ କରି ରହିଅଛନ୍ତି, କେହି ବା ମଫସଲ ଚରିବାର ପର୍ଯ୍ୟାପ୍ତ ଚରାଭୂମି ସେ ଅଞ୍ଚଳରେ ଥିବା ଯୋଗେ ଦୋଉରି କରି ରହିଥାନ୍ତି । ଭୂୟାଁମାନେ ସେମାନଙ୍କଠାରୁ କୌଣସି କର ନିଅନ୍ତି ନାହିଁ, ମାତ୍ର ଅତିଥି ବା ରାଜକର୍ମଚାରୀ ଆସିଲେ ସେମାନଙ୍କ ପ୍ରୟୋଜନୀୟ ଦୁଧ, ଦହି, ଛେନା ଓ ଘିଅ ପ୍ରଭୃତି ସେମାନେ ବିନା ପଇସାରେ ଯୋଗାଇବାକୁ ବାଧ୍ୟ ହୁଅନ୍ତି ।

ଭୂୟାଁମାନେ ନିଜ ନିଜ ଭୂମିଖଣ୍ଡମାନଙ୍କୁ ନିଜର ଜମିଦାରୀ ବୋଲି ମନେ କରନ୍ତି । ସେମାନଙ୍କ ହୃଦୟରେ ସ୍ୱାଧୀନତା ଭାବ ସବୁବେଳେ କ୍ରୀଡ଼ା କରୁଥାଏ । ଅନ୍ୟାନ୍ୟ ସ୍ୱାଧୀନ ଜାତି ପରି ସେମାନଙ୍କ ପ୍ରତ୍ୟେକ ଧମନୀରେ ସ୍ୱାଧୀନତାର ସ୍ରୋତ ପ୍ରବାହିତ । ପ୍ରତ୍ୟେକ ଭୂୟାଁ ତାହାର ନିଜ ଜମି ଚାଷ କରେ । କେହି ଚାଷ ବା ଶିକାର ଛଡ଼ା ଅନ୍ୟ ବ୍ୟବସାୟ ଗ୍ରହଣ କଲେ ସେମାନେ ତାକୁ ଘୃଣା କରନ୍ତି ।

ପିଲାକାଳରୁ ଭୂୟାଁମାନେ ଆପଣାକୁ ସ୍ୱାଧୀନ ଏବଂ ଗୋଟିଏ ଅଦମ୍ୟ ଜାତିରୁ ସମ୍ଭୂତ ବୋଲି ମନେ କରନ୍ତି । ପ୍ରଧାନ

ବ୍ୟବସାୟ ଚାଷ ଓ ଅବସର ସମୟ ଆମୋଦପ୍ରମୋଦପାଇଁ ନୃତ୍ୟ ଓ ଶିକାରରେ କଟାଇବା ସେମାନେ ନିଜର କର୍ତ୍ତବ୍ୟ ବୋଲି ମନେ କରନ୍ତି । ଫସଲ ବୁଣା ଓ ଅମଳ ସମୟରେ ସେମାନେ ଅତି ପ୍ରତ୍ୟୁଷରୁ ଶେଯ୍ୟା ତ୍ୟାଗ କରି ଫଳ, ମୂଳ ଓ ଶାକାଦି ଖାଇ କାକର ନ ଶୁଖୁଣୁ ହଳ ନେଇ ବାହାରନ୍ତି ଓ ଅବିଶ୍ରାନ୍ତଭାବରେ ଚଉଦ ଘଡି ପର୍ଯ୍ୟନ୍ତ ଚାଷ କରନ୍ତି । ଯଦି ଜଙ୍ଗଲ କାଟିବା କାର୍ଯ୍ୟରେ ଲିପ୍ତ ରହନ୍ତି, ତେବେ ମଧ୍ୟାହ୍ନ ସମୟରେ ଆଉ ଥରେ ଖାଇ ଟିକିଏ ବିଶ୍ରାମ କରନ୍ତି, କିନ୍ତୁ ହଳ କାର୍ଯ୍ୟ ହେଲେ ସନ୍ଧ୍ୟା ପର୍ଯ୍ୟନ୍ତ କାର୍ଯ୍ୟ କରି ନିକଟବର୍ତ୍ତୀ ଝରଣାରେ ସ୍ନାନ କରି ଘରକୁ ଫେରନ୍ତି ଓ ଭାତ ଖାଇ ବା ଫଳ ମୂଳ ଖାଇ ନୃତ୍ୟଭୂମିରେ ଉପସ୍ଥିତ ହୁଅନ୍ତି ।

ସେମାନଙ୍କ ଚାଷଭୂମିକୁ କମାଣ କହନ୍ତି । ଗୋଟିଏ ଗ୍ରାମବାସୀ ଗୋଟିଏ ପାହାଡ଼କୁ ତିନି ବର୍ଷ ବା ଦୁଇ ବର୍ଷ ଫସଲ କରି ଛାଡ଼ି ଦିଅନ୍ତି ଓ ଅନ୍ୟ ବର୍ଷ ପାଇଁ ଅନ୍ୟ ପାହାଡ଼ରେ କମାଣ କରନ୍ତି । ପାହାଡ଼ର ମୂଳଦେଶରୁ ଶିଖର ପର୍ଯ୍ୟନ୍ତ ଚାଷ କରି ନାନାବିଧ ଫସଲ କରନ୍ତି । ସେହି କମାଣରେ ଶିମ୍ବ, ଝୁଡ଼ଙ୍ଗ, ଜହ୍ନି, କନ୍ଦମୂଳ ଆଦି ପରିବା ମଧ୍ୟ କରନ୍ତି । ପାହାଡ଼ ଛଡ଼ା ସେମାନେ ଜଳଜମି କରନ୍ତି ନାହିଁ । ଡାହୁଧାନ, ହରଡ଼, ବିରି, ମୁଗ, କୋଳଥ, ରାଶି, ସୋରିଷ, ଗୁଲୁଜି, ଚିନା, କାଙ୍ଗୁ, ଗଙ୍ଗୋଳ ପ୍ରଭୃତି ସେମାନଙ୍କର ପ୍ରଧାନ ଫସଲ । ସେମାନେ ଗାଈଦ୍ୱାରା ମଧ୍ୟ ହଳ କରନ୍ତି । ଏପରି ଦେଖାଯାଇଅଛି ଯେ, ଗାଈ ହଳ ବୁଲୁଥିବା ସମୟରେ ବାଛୁରି ପଛରେ ଗୋଡ଼ାଇ

ଧୂମ୍ରପାନ କରୁଥାଏ । ସେମାନେ ଗାଈ ଦୁହଁନ୍ତି ନାହିଁ । ଭୂୟାଁପଡ଼ିମାନଙ୍କରେ ଗାଈ ଦୁଧ ସହଜରେ ମିଳେ ନାହିଁ ।

କୌଣସି ଭୂୟାଁଗ୍ରାମରେ ପୁଷ୍କରଣୀ ଦେଖାଯାଏ ନାହିଁ । ନିଜେ କୂପ ବା ପୁଷ୍କରଣୀ ଖୋଳିବା ଧର୍ମବିରୁଦ୍ଧ ବୋଲି ଭୂୟାଁମାନେ ମନେ କରନ୍ତି । କ୍ୱଚିତ୍ ବଡ଼ ବଡ଼ ଗ୍ରାମମାନଙ୍କରେ ପୁଷ୍କରଣୀ ଦେଖାଯାଏ । ମାତ୍ର ତାହା ଅନ୍ୟ ଜାତୀୟ ଲୋକ-ମାନଙ୍କଦ୍ୱାରା ଖୋଳା ହୋଇଥାଏ ।

ସ୍ତ୍ରୀମାନଙ୍କ ସ୍ନାନଘାଟ ପୃଥକ୍ ହୋଇଥାଏ; କାରଣ ସେମାନେ ବିବସ୍ତ୍ର ହୋଇ ସ୍ନାନ କରନ୍ତି । କେହି ପୁରୁଷ ସେ ସ୍ଥାନର ସୀମା ପର୍ଯ୍ୟନ୍ତ ଯିବା ସେମାନଙ୍କ ମଧ୍ୟରେ ବିଶେଷଭାବରେ ନିଷେଧ ଥାଏ । ଦୈବାତ୍ କୌଣସି କାରଣବଶତଃ କାହାକୁ ଯିବାକୁ ହେଲେ ଦୂରରୁ ଡାକ ଦେଇ ଉଚ୍ଚସ୍ୱରରେ ଶବ୍ଦ କରି ଯିବାକୁ ହୁଏ ।

ଅଧିକାଂଶ ଗ୍ରାମମାନଙ୍କରେ ଗ୍ରାମଦେବତାମାନଙ୍କପାଇଁ ଗୋଟିଏ ଗୋଟିଏ ଗୃହ ତିଆର ହୋଇଥାଏ ଓ ତାହା ବଡ଼ ବଡ଼ ପଣସଗଛମାନଙ୍କଦ୍ୱାରା ବେଷ୍ଟିତ ରହିଥାଏ ।

ବଡ଼ ବଡ଼ ଗ୍ରାମମାନଙ୍କରେ ସ୍କୁଲମାନ ଅଛି, ମାତ୍ର ତାହା ଅନାବଶ୍ୟକ ଓ ଅନିଷ୍ଟକର ବୋଲି ସେମାନେ ମନେ କରନ୍ତି । ସେମାନଙ୍କ ପକ୍ଷରେ ଏପରି ଭାବିବା ଆଶ୍ଚର୍ଯ୍ୟର ବିଷୟ ନୁହେଁ, କାରଣ ଯେଉଁ ହାତରେ ଲଙ୍ଗଳ ସାଧ ହେଉ ନାହିଁ, ସେ ହାତରେ ଲେଖନୀ ଆସିବ ହେବା ଅସମ୍ଭବ । ନିମ୍ନୋକ୍ତ

ଦୃଷ୍ଟାନ୍ତରୁ ଟିଷା ପ୍ରତି ସେମାନଙ୍କର କପଟ ଅଶ୍ରଦ୍ଧା ତାହା ପ୍ରକାଶ ପାଉଅଛୁ । ଯଦି କୌଣସି ବାଳକ ବିଶେଷ କାରଣବଶତଃ ସ୍କୁଲରେ ଉପସ୍ଥିତ ନ ହୁଏ, ତେବେ ତାହାର ପିତା ଆସି କହେ ―ପିଲା ଆସିବ ନାହିଁ, ତା ଲାଗି ମୁଁ ଅଛିଲି । ଏହା କହି ସେ ସ୍କୁଲରେ ବସି ରହେ ।

ଷ୍ଟେହି କର୍ମଗୃହ ବ୍ୟତୀତ ଗ୍ରାମରେ ଗୋଟିଏ ପ୍ରଧାନ ଥାଏ । ଅଥ ମଧ୍ୟ ସାମାଜିକ ବିଷୟ ଆଲୋଚନାପାଇଁ ବଂଶ-ପରମ୍ପରାକ୍ରମେ ସେମାନଙ୍କଦ୍ୱାରା ମନୋନୀତ କର୍ମଗୃହ ରହିଥାନ୍ତି । ରାଜସ୍ୱ ଆଦାୟ କିମ୍ବା ଗ୍ରାମର ଅନ୍ୟାନ୍ୟ ବିଷୟ ସମ୍ପାଦନ କରିବା ପାଇଁ ଗୋଟିଏ ନାୟକ ମନୋନୀତ କରିଥାନ୍ତି, ଯେ କି ପ୍ରଧାନର ସହକାରୀସ୍ୱରୂପ କାର୍ଯ୍ୟ କରେ, ମାତ୍ର ଷ୍ଟେହି ତରଫରୁ ସେ ମନୋନୀତ ହୁଏ ନାହିଁ । ଗ୍ରାମର ପୁରୋହିତଙ୍କୁ ଦେହୁରି କହନ୍ତି । ସମସ୍ତ ଦେବଦେବୀଙ୍କ ଭାର ତାହା ଉପରେ ନ୍ୟସ୍ତ ଥାଏ । ଅବିବାହିତା ଯୁବକମାନଙ୍କର ପ୍ରତିନିଧି-ସ୍ୱରୂପ ଜଣେ ଗଉଁମାଝି ନାମରେ ଅଭିହିତ ହୋଇଥାଏ । ସେ ପ୍ରଣୟଜନିତ କଳହାଦି ନିଷ୍ପତ୍ତି କରେ ଏବଂ ସେମାନଙ୍କର ସମସ୍ତ ହାଉ ଗୁହାରି ଗ୍ରାମ୍ୟ ପଞ୍ଚାୟତଙ୍କ ସମୀପରେ ଉପସ୍ଥିତ କରେ । ତାହାର ଆଦେଶ ଅନୁସାରେ ନୃତ୍ୟୋତ୍ସବ ଅନୁଷ୍ଠିତ ହୁଏ ।

ଏକଗୋତ୍ରସମ୍ଭୂତ କେତେଗୁଡ଼ିଏ ପରିବାର ଏକତ୍ର ମିଶି ଗୋଟିଏ ସମ୍ପ୍ରଦାୟ ଗଠିତ ହୋଇଥାଏ । ଗୃହସ୍ୱାମୀର ଗୃହ ମଧ୍ୟରେ ସମ୍ପୂର୍ଣ୍ଣ ଅଧିକାର ଥାଏ, ମାତ ଜୀବିତାବସ୍ଥାରେ

ପୁତ୍ରମାନଙ୍କର ସମ୍ପତ୍ତିରେ ସ୍ୱତ୍ୱ ନ ଥାଏ । ମାତା ଖାଦ୍ୟ ପ୍ରସ୍ତୁତ କରି ସମସ୍ତ ପରିବାର ମଧ୍ୟରେ ଭାଗ କରି ଦିଏ । ଗୃହର ଅନ୍ୟାନ୍ୟ ସ୍ତ୍ରୀମାନେ ତାହାକୁ ଉକ୍ତ କାର୍ଯ୍ୟରେ ସାହାଯ୍ୟ କରନ୍ତି । ପ୍ରତ୍ୟେକ ସମ୍ପ୍ରଦାୟ ମଧ୍ୟରେ ପରସ୍ପର ଏକତା ଅଥବା ଯୋଗେ କେତେଗୁଡ଼ିଏ ସମ୍ପ୍ରଦାୟ ଏକତ୍ର ମିଳି ଗୋଟିଏ ଗ୍ରାମରେ ରହନ୍ତି । ସେମାନଙ୍କ ମଧ୍ୟରୁ ଜଣକୁ ପ୍ରଧାନ କରି ସମସ୍ତେ ତାହାର ଆଦେଶ ଅନୁସାରେ ଚଳନ୍ତି । ଏହା ଛଡ଼ା ସେମାନଙ୍କ ସାମାଜିକ ବିଷୟର ତତ୍ତ୍ୱ ନେବା ପାଇଁ ଜଣେ ସରଦାର ମନୋନୀତ ହୋଇଥାଏ । ଉକ୍ତ ପଦଟି ସେ ଲୋକର ପୁରୁଷାନୁକ୍ରମେ ରହିଥାଏ, ଗୋଟିଏ ସରଦାରର ମୃତ୍ୟୁ ପରେ ତାହାର ଜ୍ୟେଷ୍ଠ ପୁତ୍ରକୁ ଉକ୍ତ ଭାର ଦିଅନ୍ତି । ଯଦି କାହାର ଜ୍ୟେଷ୍ଠପୁତ୍ର ଉକ୍ତ କାର୍ଯ୍ୟର ଅନୁପଯୁକ୍ତ ବୋଲି ବିବେଚିତ ହୁଏ, ତେବେ ତାହାର ବଂଶ ମଧ୍ୟରୁ ଅନ୍ୟ କେହି ଉପଯୁକ୍ତ ଥିଲେ ତାହାଠାରେ ଉକ୍ତ ପଦ ଅର୍ପିତ ହୁଏ ।

ଉପରୋକ୍ତ ନିଯୁକ୍ତି ବଂଶମର୍ଯ୍ୟାଦା ଏବଂ ବ୍ୟକ୍ତିଗତ ଯୋଗ୍ୟତା ଉପରେ ନିର୍ଭର କରେ. ଏହା ଛଡ଼ା ଅନ୍ୟ କୌଣସି ବିଷୟ ବିଚାର କରି ଉକ୍ତ ପଦମାନ ଅର୍ପିତ ହୁଏ ନାହିଁ । ଯଦି କେହି ଆପଣାକୁ ଅଯୋଗ୍ୟ ମନେ କରିଥାଏ, ତେବେ ସେ ଆପଣାର ପରିବାରବର୍ଗଙ୍କ ସମ୍ମତିକ୍ରମେ ସେ ପଦ ପରିହାର କରେ । ଏହା ସବୁ ଧର୍ମଗତଭାବରେ କରାଯାଏ । ଏଣୁ ଉକ୍ତ ପଦମାନ ଅତି ପବିତ୍ର ବୋଲି ବିବେଚିତ ହୁଏ । ଏହି କାର୍ଯ୍ୟମାନଙ୍କପାଇଁ

କୌଣସି ବେତନ ବା ଅନ୍ୟପ୍ରକାର ଲାଭର ଆଶା ନ ଥାଏ । କେବଳ ସାଧାରଣଙ୍କର ସମ୍ମାନ ଓ ଭକ୍ତିପ୍ରଦର୍ଶନ ପରିଲକ୍ଷିତ ହୁଏ । ସେମାନେ ମଧ୍ୟ ଆପଣାକୁ ସାଧାରଣ ଅପେକ୍ଷା ଉଚ୍ଚ ବୋଲି ମନେ କରନ୍ତି ନାହିଁ । କାରଣ ସେମାନଙ୍କର ସାମାଜିକ ରୀତି ପରମ୍ପରାକ୍ରମେ ଜୀବିକା ନିର୍ବାହର ଉପାୟ ଅନ୍ୟାନ୍ୟଙ୍କ ସଙ୍ଗେ ସମାନ ବୋଲି ହୃଦୟଙ୍ଗମ କରି ପାରନ୍ତି । ମଧ୍ୟ ସେମାନଙ୍କର କୌଣସି ସ୍ୱତନ୍ତ୍ର ଜାଗିର ନାହିଁ କିମ୍ବା ଦାସ ଦାସୀ ନାହାନ୍ତି । ଗ୍ରାମର ସମସ୍ତେ ଏକ ପରିବାରର ଅନ୍ତର୍ଭୁକ୍ତ ଓ ସେମାନଙ୍କର କେବଳ ପୁରୁଷାନୁକ୍ରମିକ ଅଧିକୃତ ଜଙ୍ଗଲ ଉପରେ ସମସ୍ତଙ୍କ ଗ୍ରାସାଚ୍ଛାଦନ ନିର୍ଭର କରେ ବୋଲି ଦୃଢ଼ ବିଶ୍ୱାସ କରି କୌଣସି ପ୍ରକାରେ ସାଧାରଣ ଅପେକ୍ଷା ଆପଣାର ଅଧିକୃତ ଟେକ ଦେଖାନ୍ତି ନାହିଁ । କେବଳ ଗ୍ରାମବାସମାନେ ଗୋଟିଏ ଶିକାର କଲେ ତହିଁରୁ ସେମାନଙ୍କ ସମ୍ମାନାର୍ଥ ଗୋଟିଏ ଲେଖାଏଁ ଅଧିକା ଭାଗ ଦିଅନ୍ତି । କେହି କେହି ମଧ୍ୟ ସରଳ-ଭାବରେ ଭକ୍ତିର ନିଦର୍ଶନସ୍ୱରୂପ ନୂତନ ଫସଲ ଅମଳ ସମୟରେ କୌଣସି ଭେଟି ବା ଅନ୍ୟ କୌଣସି ପ୍ରକାର ସହାଯ୍ୟର ଆଶା କରନ୍ତି ନାହିଁ । କେବଳ ସ୍ୱକୀୟ ବା ସାଧାରଣ ଉତ୍ସବାଦି ସ୍ଥାନରେ ପ୍ରଥମ ସମ୍ମାନ ସେମାନଙ୍କର ପ୍ରାପ୍ୟ ଅଟେ ।

କୌଣସି ବିଶିଷ୍ଟ ପ୍ରୟୋଜନୀୟ କାର୍ଯ୍ୟରେ ସେମାନେ ଗ୍ରାମର ପୁରୁଖା ଲୋକମାନଙ୍କୁ ନ ଡାକି କିଛି କରନ୍ତି ନାହିଁ । ପ୍ରତ୍ୟେକଙ୍କ ଗୃହରେ ସେମାନେ ସୁଶୀଳତାରକ୍ଷକ, ଅନ୍ୟାୟ

କାର୍ଯ୍ୟ ଓ କଳହର ନିବାରଣକାରିକ ଏବଂ ନ୍ୟାୟାନ୍ୟାୟ ବିର୍ଣ୍ଣୟକ ଅଟନ୍ତି ।

କେହି କୌଣସି ପଦାର୍ଥ ଚୋରି କରିବାର ପ୍ରମାଣ ହେଲେ ଗ୍ରାମ୍ୟ ପଞ୍ଚାୟତରେ ଚୋର ଅପହୃତ ଦ୍ରବ୍ୟ ଫେରାଇ ଦେଇ କ୍ଷମା ମାଗିବାର ମୂଲ୍ୟ ଦିଏ । ପ୍ରଥମ ଥର ଚୋରି ମୋକଦ୍ଦମାରେ ଏହା ସାଧାରଣ ଦଣ୍ଡ । ମାତ୍ର ସେ ଲୋକଟି ବାରମ୍ବାର ଉକ୍ତ କାର୍ଯ୍ୟ କଲେ ଉକ୍ତ ଦୋଷ ସେ ଲୋକଦ୍ୱାରା ନ ହୋଇ ସମସ୍ତ ସମାଜକୃତ ବୋଲି ବିବେଚିତ ହୋଇ ଅପରାଧୀ ସାଧାରଣରେ ଘୃଣ୍ୟ ହୁଏ । ଏପରି କି, କେହି ତାହା ସଙ୍ଗେ କଥା କହିବାକୁ ଇଚ୍ଛା କରନ୍ତି ନାହିଁ । ଏଣୁ ତାହାର ଜୀବନହିଁ ତାକୁ ଗୋଟିଏ ଭାରସ୍ୱରୂପ ବୋଧ ହୁଏ । ସାମାନ୍ୟ କଳହରେ ମାତ୍ର ମନାନ୍ତର ହେଲେ ଉଭୟ ପକ୍ଷଙ୍କୁ ମିଳାଇବାପାଇଁ ପଞ୍ଚାୟତ ବସେ । ଉଭୟପକ୍ଷରୁ କଥା ଶୁଣାଗଲା ପରେ ସେମାନଙ୍କୁ ଉପଦେଶଦ୍ୱାରା ସତର୍କ କରି ଦିଆଯାଏ । ପୁନର୍ମିଳନର ଚିହ୍ନସ୍ୱରୂପ ଉଭୟପକ୍ଷ ପ୍ରତ୍ୟେକେ ଜଳୁଥିବା ଅଙ୍ଗାରୁ ଖଣ୍ଡିଏ ଲେଖାଏ ଖୁଣ୍ଟି ଆଣି ଅଙ୍ଗାରଥିବା ଅଂଶଟି ଛେଦ ପକାଇ ନଈରେ ଦିଅନ୍ତି ।

ଅପରାଧୀ ଫୌଜଦାରୀ ଅଦାଲତରେ କ୍ୱଚିତ୍ ଦଣ୍ଡିତ ହୁଏ । ଗ୍ରାମବାସୀମାନେ ଏ କଥା ଜାଣି ସୁଦ୍ଧା ଉକ୍ତ ଦଣ୍ଡ ଫୌଜଦାରୀ ଅଦାଲତ ନିଜ ସନ୍ତୋଷପାଇଁ ଦେଇଅଛି ଭାବି ସେମାନେ ନିଜ ଗ୍ରାମ ପଞ୍ଚାୟତରେ ପୁନର୍ବିଚାର କରନ୍ତି । ଗ୍ରାମ୍ୟସଭାର ଅନୁଷ୍ଠାନ ଅତି ସରଳ ହେଲେହେଁ ଅତି କୌତୂହଳପ୍ରଦ ।

ପୂର୍ବୋକ୍ତ ଗ୍ରାମର ଉଚ୍ଚ ପଦଧାରୀମାନଙ୍କ ମଧ୍ୟରେ ଜଣେ ମଣ୍ଡଳ ଘରେ ଛାଡ଼ା ହୋଇ ଅତି ଉଚ୍ଚସ୍ଥଳରେ ତିନିଗୋଟି ଚ ଛଡ଼େ । ଏହା ଜାଣିବା ମାତ୍ରକେ ଆହୂତ ବ୍ୟକ୍ତି ଉପସ୍ଥିତ ହୁଅନ୍ତି । ଏମାନଙ୍କ ଛଡ଼ା ଇତର ଲୋକ କେହି ତାକୁ ପାରେ ନାହିଁ । ଡ଼ାକଲେ ଗ୍ରାମରେ ବିପଦ ଘଟିବାର ଆଶଙ୍କା ଛଟାଯାଏ । କାରଣ ଧର୍ମତଃ ସେମାନଙ୍କ ଛଡ଼ା ଅନ୍ୟ କାହାର ଉକ୍ତ କାର୍ଯ୍ୟକ୍ଷର ଅଧିକାର ନାହିଁ ବୋଲି ବିଶ୍ୱାସ କରନ୍ତି ।

ସାମାଜିକ କଳହ ନିଷ୍ପତ୍ତି, ଧର୍ମୋତ୍ସବ ଏବଂ ଅନ୍ୟାନ୍ୟ କ୍ଷୁଦ୍ର କ୍ଷୁଦ୍ର ବିଷୟ ଗ୍ରାମ୍ୟସଭାଦ୍ୱାରା ଗୃହୀତ ହୁଏ । ସାମାନ୍ୟ କିନ୍ତୁ କଥା ହେଲେ ସଭା ଆହୂତ ହୁଏ । ଡାକୁଆ ମତ ସଦରରେ ଚଳାଯାଏ ।



## ରାଜସ୍ୱ ।



ରାଜା ଭୂୟାଁପୀଢ଼ରେ ଗସ୍ତ କଲାବେଳେ ଭୂୟାଁମାନେ ଠଙ୍କା ଛମ୍ବା ଅନ୍ୟାନ୍ୟ ସାମଗ୍ରୀ ଭେଟରୂପେ କର ଦେଉଥିଲେ । ୧୮୬୮ ଖ୍ରୀଷ୍ଟାବ୍ଦରେ ଘଟିଥିବା ଭୂୟାଁବିଦ୍ରୋହ ପରେ କର୍ଣ୍ଣେଲ୍ ସର୍ ଜେମ୍ସ ଜନ୍ସନ ଏବଂ ଗବର୍ଣ୍ଣମେଣ୍ଟ ପଲିଟିକେଲ୍ କର୍ମଚାରୀଙ୍କ ବନ୍ଦୋବସ୍ତ ମୂଳରୁ ସେମାନଙ୍କ ଉପରେ ନିର୍ଦ୍ଧାରିତ କର ଧାର୍ଯ୍ୟ ହୋଇ ନ ଥିଲା । ମାତ୍ର କର୍ଣ୍ଣେଲ୍ ଜନ୍ସନ୍ ଅତି

ବୃତ୍ତିମଣ୍ଡଳ ମଧ୍ୟରେ ଘର ପ୍ରତି ଚାରିଅଣା ଓ ହଳ ପ୍ରତି ଆଠଅଣା ଏବଂ ସ୍କୁଲ ଫି ଘର ପ୍ରତି ଏକଅଣା ଧାର୍ଯ୍ୟ କଲେ । ଏହା ବ୍ୟତୀତ କେତେକ ଷ୍ଟେଟ୍ର ଗୃହ ଛପରବନ୍ଦି କରିବା ଏବଂ ରାଜା ଗସ୍ତ କଲାବେଳେ ବନା ପଇକମାନେ, ତାହାଙ୍କ ଭାର ବୋହିବା ଭୂୟାଁମାନଙ୍କ କର୍ତ୍ତବ୍ୟକାର୍ଯ୍ୟରୂପେ ହୋଇଥିଲା । ଏହିପରି ଭାର ବୋହିବା କାର୍ଯ୍ୟ ସେମାନେ ଆବହମାନ କାଳରୁ କରି ଆସୁଥିବାରୁ ଅନୁମିତ ହୁଏ । କାରଣ ସେମାନେ 'ବାହୁଙ୍ଗି'ଙ୍କୁ ଆପଣାର ମନ୍ତ୍ରକ ବୋଲି ଲେଖାନ୍ତି । ଉପରୋକ୍ତ ବନ୍ଦୋବସ୍ତ ଗବର୍ଣ୍ଣମେଣ୍ଟଙ୍କଦ୍ୱାରା ପ୍ରସ୍ତାବିତ ଓ ମଞ୍ଜୁର ହୋଇଥିଲା, ଆଉ ମଧ୍ୟ ସର୍ତ୍ତ ଥିଲା ଯେ ଗବର୍ଣ୍ଣମେଣ୍ଟଙ୍କ ଅଜ୍ଞାତସାରରେ କେହି ଏହା ପରିବର୍ତ୍ତନ ବା ପରିବର୍ଦ୍ଧନ କରି ପାରିବେ ନାହିଁ । ମାତ୍ର କର୍ଣ୍ଣେଲ ଜନ୍ସନ୍ ଷ୍ଟେଟରୁ ଚାଲିଗଲାବେଳେ ତତ୍କାଳୀନ ରାଜା ଧନୁର୍ଜୟ ନାରାୟଣ ଭଞ୍ଜଙ୍କଦ୍ୱାରା ସେ ସର୍ତ୍ତ ଭଙ୍ଗ ହେଲା ।

୧୮୯୩ ଖ୍ରୀଷ୍ଟାବ୍ଦରେ ଘଟିତ ବିଦ୍ରୋହ ପରେ ଗବର୍ଣ୍ଣମେଣ୍ଟ ଏଜେଣ୍ଟ୍ ଏଚ୍: ପି: ଓଆଲି ସାହେବଙ୍କ ଦ୍ୱାରା ପୁନର୍ବାର ନୂତନ ବନ୍ଦୋବସ୍ତ କରାଗଲା । ଏହାଦ୍ୱାରା ଘର ପ୍ରତି ଛଅଣା ଛପାହି ଓ ହଳ ପ୍ରତି ତେରଅଣା କରି ଧାର୍ଯ୍ୟ ହେଲା । ସ୍କୁଲ ଫି ମଧ୍ୟ ଏକଅଣା ସ୍ଥଳେ ଦୁଇଅଣା ହେଲା । ଆଉ ମଧ୍ୟ ଯେଉଁମାନେ ଷ୍ଟେଟ୍ର ଗୃହ ଛପରବନ୍ଦ କରିବାକୁ ଅନିଚ୍ଛୁକ ହେଲେ, ସେମାନଙ୍କ ଉପରେ ଅଧିକା (ଘର ପ୍ରତି) ତିନିଅଣା କର ଧାର୍ଯ୍ୟ କରାଗଲା । ଏ ବନ୍ଦୋବସ୍ତରେ ମୁଦ୍ରିତ ପଟ୍ଟାମାନ

ଉପରେକୁ ଘରଡ଼ ପଦ୍ଧତି ଗ୍ରାମର ପ୍ରଧାନମାନଙ୍କୁ ଦିଆଯାଉଥିଲା ।

କୃଷିକାର୍ଯ୍ୟ ଆଦିମ ଜାତିଙ୍କ ଭ୍ରମଣଶୀଳ ଲକ୍ଷଣ ଏପର୍ଯ୍ୟନ୍ତ ଭୂୟାଁମାନଙ୍କ ମଧ୍ୟରେ ରହିଅଛି । ଗୋଟିଏ ଜଙ୍ଗଲରୁ ବଳ ଗୁଲିଗଲେ ସେମାନେ ତାହା ପରିତ୍ୟାଗ କରି ନୂତନ ଜଙ୍ଗଲ ଆବାଦ କରନ୍ତି । ଆଉ ମଧ୍ୟ ପ୍ରାୟ ପ୍ରତି ୨୦ ବର୍ଷ ପରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗ୍ରାମ ପରିବର୍ତ୍ତନ କରନ୍ତି । ସେମାନଙ୍କର କୃଷି କେବଳ ପାହାଡ଼ପାର୍ଶ୍ୱସ୍ଥ ଜଙ୍ଗଲ ଉପରେ ନିର୍ଭର କରେ । ଏହି ଜଙ୍ଗଲ ସାଧାରଣତଃ ୩ ବର୍ଷ ଚାଷ କରାଯାଏ । ପ୍ରଥମ ବର୍ଷ ନାନା ପ୍ରକାର ରବି ଫସଲ, ଦ୍ୱିତୀୟ ବର୍ଷ ଧାନ ଓ ତୃତୀୟ ବର୍ଷ କ୍ୱଚିତ୍ ଶାକସବଜୀ ଆଦି ଶସ୍ୟ ହୁଏ ।

ଏହା ସ୍ୱାଭାବିକ ଯେ ଯେଉଁଠାରେ ଏକପ୍ରକାର କୃଷି ହୁଏ ସେଠାରେ କ୍ଷତି ଅନିବାର୍ଯ୍ୟ, ମଧ୍ୟ ପୁରାତନ ଜଙ୍ଗଲମାନ ଧ୍ୱଂସ ପ୍ରାପ୍ତ ହୁଏ । ଏଣୁ ଭୂୟାଁପୀଢ଼ମାନଙ୍କରେ ଭ୍ରମଣ କଲାବେଳେ ପାହାଡ଼ମାନ ଅନାବୃତ ଦେଖାଯାଏ । କୌଣସି କୌଣସି ଗ୍ରାମରେ ଅଳ୍ପ ପରିମାଣର ଶାରଦ ଜମି ଦେଖାଯାଏ । ମାତ୍ର ସେ ସବୁ ପୁରାତନ କ୍ଷେତ୍ରରେ ଆବାଦ ହୋଇଥାଏ । ସାଝିରେ ଅର୍ଥାତ୍ ଏକରୁ ଅଧିକ ଲୋକ ମିଳି କୌଣସି ଜମି ଚାଷ କରନ୍ତି ନାହିଁ । ପ୍ରତ୍ୟେକେ ନିଜ ନିଜ ଜମି ଚଷନ୍ତି । ସେମାନେ ନିଜକୁ ରଇତ ବା ଅନ୍ୟ କାହାକୁ ଜମିଦାର ବୋଲି ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ପୂର୍ବପୁରୁଷମାନେ ଯେଉଁ ଜମି

ଅଧିକାର କରିଥିଲେ ସେମାନେ ତାହାର ସତ୍ତ୍ୱାଧିକାରୀ ବୋଲି ଜ୍ଞାନ କରନ୍ତି ।

ଏକ ଗ୍ରାମର ଜମି ବିବାଦରେ ଅନ୍ୟ ଗ୍ରାମ ବା ଏକ ଗ୍ରାମ ମଧ୍ୟରେ କାହାରି ଜମି ଅନ୍ୟ କେହି ଚାଷ କଲେ ତାହା ପୂର୍ବ ଦଖଲକାରୀଙ୍କୁ ଛାଡ଼ି ଦିଆଯାଏ । ପ୍ରତ୍ୟେକ ଗ୍ରାମରେ ଜମି ଏତେ ଅଧିକ ରହିଥାଏ ଯେ ତାହାର ଦଶମାଂଶ ଆବାଦ ହୋଇପାରେ ନାହିଁ । ଯଦି କୌଣସି ଜମିରେ ବିବାଦ ଉପସ୍ଥିତ ହୁଏ, ତାହା ଆପଣା ଆପଣା ମଧ୍ୟରେ ମୀମାଂସା କରୁଥାନ୍ତି । ଯେଉଁ ଜମି ନିଜର ବା ଅନ୍ୟ କାହାର ନୁହେ, ଲୋକ ଅଭାବରୁ ପଡ଼ିଆ ରହିଅଛି, ସେ ଜମିକୁ କେହି ଚାଷ କରିବାର ଇଚ୍ଛା କଲେ ଗ୍ରାମର ପଞ୍ଚାୟତଙ୍କ ଅନୁମତି ନେଇ ଆବାଦ କରେ । ସେମାନଙ୍କ ପୈତୃକ ସ୍ଥାବର ସମ୍ପତ୍ତି ଅଧିକାରବିଷୟକ ଆଇନରୁ ନିଶ୍ଚୟ କରାଯାଏ ଯେ, ଯେଉଁ ଲୋକ ଜମି ଆବାଦ କରି ପାରେ ନାହିଁ, ସେ ଲୋକର ଜମିରେ ଅଧିକାର ରହେ ନାହିଁ ।

ଚାଷର ଉପକରଣ ଓ ଚାଷଜମି ପୁତ୍ରପୌତ୍ରାଦିକ୍ରମେ ଦଖଲ କରନ୍ତି । ପୁତ୍ର ନ ଥିଲେ ଜାତି ଉଆରସମାନେ ଦଖଲ କରନ୍ତି, ମାତ୍ର ଦୁହିତାମାନଙ୍କର ସ୍ଥାବର ସମ୍ପତ୍ତିରେ କିଛି ସ୍ୱତ୍ୱ ନ ଥାଏ । କେବଳ ଅସ୍ଥାବର ସମ୍ପତ୍ତିରେ ସେମାନଙ୍କର ସ୍ୱତ୍ୱ ଥିବାର ବିବେଚିତ ହୁଏ । ଭାଇମାନେ କନ୍ୟାମାନଙ୍କ ବିବାହ ପର୍ଯ୍ୟନ୍ତ ଖୋରାକ ପୋଷାକ ଯୋଗାଇବାକୁ ବାଧ୍ୟ ଅଟନ୍ତି । ସେମାନେ ଏତେ ସରଳ ଆଇନ ଓ ପାରିବାରିକ ଶାସନର ଅଧୀନତାରେ

ବାସ କରି ଏପରି ଅଦମ୍ୟ ସୌଜନ୍ୟ ଦେଖାନ୍ତି, ଯାହା ପ୍ରତି ଅଧୁନିକ ସଭ୍ୟଜାତିମାନଙ୍କ ହିଂସାର ଉଦ୍ରେକ ହୋଇ ପାରେ । ଭୂସମ୍ପତ୍ତି ବା ସାମାଜିକ ରୀତିର ପୂର୍ବପ୍ରଚଳିତ ପ୍ରଥାର ବ୍ୟତିକ୍ରମ ହେଲେ ସେମାନେ ତାହା ରକ୍ଷା କରିବା ବିଷୟରେ ଦୃଢ଼-ପରିକର ହୁଅନ୍ତି । କେହି ତାହା ସଂସ୍କାର କରିବାକୁ ଗଲେ ସେମାନଙ୍କର ନିତାନ୍ତ ଅପ୍ରିୟ ହୋଇ ପଡ଼େ । କିନ୍ତୁ କର୍ଣ୍ଣେଲ ଜନ୍‌ସନ୍ ଓ ଏଲ୍. ପି. ଓଆଲି ସାହେବଙ୍କ କାର୍ଯ୍ୟ ଅତି ଆଶ୍ଚର୍ଯ୍ୟଜନକ ଫଳ ଦେଖାଇଛି । କର୍ଣ୍ଣେଲ୍ ଜନ୍‌ସନ୍ ପ୍ରଥମେ ସେମାନଙ୍କ ଭାଷା ବୁଝି ପାରୁ ନ ଥିଲେ, ଓଆଲି ସାହେବ ମଧ୍ୟ ଯେତେବେଳେ ଆସିଲେ, ସେ ସେମାନଙ୍କ ଆଚାର ବ୍ୟବହାର ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ । କିନ୍ତୁ ଉଭୟ ସାହେବ ଭୂୟାଁମାନଙ୍କ ଅଭିରୁଚି ରୀତି ନୀତି ଉପରେ ଆସ୍ଥା ପ୍ରଦର୍ଶନ କରି ସେମାନଙ୍କର ବିଶ୍ୱାସଭାଜନ ହୋଇଥିଲେ । ଏପର୍ଯ୍ୟନ୍ତ ସେ ଉଭୟ ସାହେବଙ୍କ ନାମକୁ ସେମାନେ ପ୍ରତିଦିନ ଗଳ୍ପରେ ସ୍ଥାନ ଦେଇଅଛନ୍ତି ଓ ସେମାନଙ୍କର ମଙ୍ଗଳକାମୀ ବୋଲି କହିଥାନ୍ତି ।

କୌଣସି କର୍ମଚାରୀର ବ୍ୟକ୍ତିଗତ କ୍ଷମତାପ୍ରଦର୍ଶନ କିମ୍ବା ମିଛ ମିଛ କଥା ବା ଆଦେଶରେ ଆସ୍ଥାପ୍ରିୟ କିମ୍ବା ବୁଦ୍ଧିହୀନ କଥା ଅଥବା ଅମନୋଦୃଷ୍ଟି ବ୍ୟବହାର ଦେଖିଲେ ଭୂୟାଁମାନେ ତାହା ପ୍ରତି ଶ୍ରଦ୍ଧା ବା ଭକ୍ତି ରଖନ୍ତି ନାହିଁ ।

ଏହିପରି ନାନାବିଧ ବନ୍ଦୋବସ୍ତ ଓ ଜମି ଜଳିଦ୍ଧ ମୀମାଂସା ପାହାଡ଼ିଆ ଭୂୟାଁମାନଙ୍କ (ଅର୍ଥାତ୍ ଯେଉଁମାନେ ଭୂୟାଁପୀଢ଼ରେ ବାସ କରନ୍ତି) ମଧ୍ୟରେ ପ୍ରଚଳିତ ଅଛି । ମାତ୍ର ଯେଉଁମାନେ

ଦଣ୍ଡପାଟରେ (ପ୍ରଗନା) ଅନ୍ୟାନ୍ୟ ଜାତି ସହ ବାସ କରନ୍ତି, ସେମାନେ ଅନ୍ୟାନ୍ୟ ଜାତିଙ୍କ ପରି ପ୍ରଚଳିତ ନିୟମାନୁସାରେ ଖଜଣା ଦିଅନ୍ତି । ଖଜଣା ବ୍ୟତୀତ ସବୁ ସମ୍ପ୍ରଦାୟର ଭୂୟାଁମାନେ ପୂର୍ବ ବର୍ଷରେ ରଥ ତିଆରି ସକାଶେ କାଠ ଓ ରଥଟଣା ସକାଶେ ଲଇରେ ତିଆରି ହୋଇଥିବା ମୋଟ ଦଉଡ଼ି ଯୋଗାନ୍ତି । ପୂର୍ବେ ସେମାନେ ବିନା ପଇସାରେ କାଠ ଓ ଦଉଡ଼ି ରଡ଼ି ପର୍ଯ୍ୟନ୍ତ ବୋହି ଆଣୁଥିଲେ । ବର୍ତ୍ତମାନ ବହନ ସକାଶେ ଦୈନିକ ଖୋରାକ ପାନ୍ତି । ରାଜସ୍ୱ ଆଦାୟ ପ୍ରଥା ଅତି ସରଳ । ପ୍ରତ୍ୟେକ ପ୍ରଧାନଙ୍କୁ (ଯେ କି ଷ୍ଟେଟରୁ ପଟ୍ଟା ପାଇଥାଏ) ଜମା ପ୍ରତି ରଇତ ଉପରେ ଯେ ଖଜଣା ତାହାର ତାଲିକା ଦିଆଯାଏ । ସେ ତାହା ଆଦାୟ କରି ପୀଡ଼ ସରଦାର ଜିମା ଦିଏ । ପୀଡ଼ ସରଦାର ମଧ୍ୟ ପ୍ରତି ମୌଜାର ଯାହା ପ୍ରାପ୍ୟ ତାହାର ତାଲିକା ପାଇଥାଏ । ତାହାର ପୀଡ଼ ମଧ୍ୟସ୍ଥ ସମସ୍ତ ମୌଜାମାନଙ୍କର ରାଜସ୍ୱ ଆଦାୟ ହେଲେ ସେ ନିଜେ ଆସି ଖଜଣାଖାନାରେ ଖଜଣା ଦାଖଲ କରେ । ସରଦାର ଓ ପ୍ରଧାନ ଷ୍ଟେଟ୍ ତରଫରୁ ମନୋନୀତ ହୁଅନ୍ତି । କିନ୍ତୁ ସେମାନଙ୍କ ଦାବି ବିଷୟରେ ଗ୍ରାମବାସୀମାନଙ୍କ ମତ ଆଲୋଚନା କରାଯାଏ ।

ମନୋନୀତ ହେବାର ଫଳସ୍ୱରୂପ ସରଦାର ଓ ପ୍ରଧାନ ରାଜାଙ୍କଠାରୁ ଶାଢି ବା ଶିରୋପା ପାନ୍ତି । ଏହି କାର୍ଯ୍ୟପାଇଁ ସେମାନେ ମାଲିକାନା (କମିଶନ) ଅତି ସାମାନ୍ୟ ପାନ୍ତି । ମାତ୍ର ସେଥି ପ୍ରତି ସେମାନେ ଅସ୍ଥା ରଖନ୍ତି ନାହିଁ ।

ସେମାନେ ଯେଉଁ ଧାନ ଫସଲ ଅମଲ କରନ୍ତି, ତାହା ଅଳ୍ପଦିନରେ ଶେଷ ହୋଇଯାଏ । ଅନ୍ୟାନ୍ୟ ଫସଲରେ ଚାଉଳ ବଦଳାଇ ବର୍ଷଶେଷ ପର୍ଯ୍ୟନ୍ତ ଚଳନ୍ତି । ଭାତ ସେମାନଙ୍କର ପ୍ରଧାନ ଖାଦ୍ୟ ନୁହେଁ । ମଧ୍ୟେ ମଧ୍ୟେ ଆମୋଦ-ପ୍ରମୋଦ ପାଇଁ କିମ୍ବା କୌଣସି ଉତ୍ସବାଦିରେ ଭାତ ରାନ୍ଧି ଖାଇବାକୁ ଦିଅନ୍ତି, ସେମାନେ ବନଜାତ ଫଳମୂଳ ଓ ଶାକ-ସବଜୀରେ ଜୀବିକା ନିର୍ବାହ କରନ୍ତି ।



# ଧର୍ମ ।



ଭୂୟାଁମାନେ ବ୍ୟବହାରତଃ ଶକ୍ତି ଉପାସକ ଅଟନ୍ତି । ପୃଥିବୀ, ଜଳ ଏବଂ ଆକାଶରେ ସେମାନଙ୍କର ଅସଂଖ୍ୟ ଦେବଦେବୀ ଅଛନ୍ତି । କେହି କିମ୍ବା କାହାରି ସନ୍ତୁଷ୍ଟ ହୁଅନ୍ତି ନାହିଁ, ମାତ୍ର ସେମାନଙ୍କୁ ସନ୍ତୁଷ୍ଟ ନ କଲେ ସେମାନେ ବିପଦ ଘଟାନ୍ତି । ସେମାନଙ୍କର ଧର୍ମନୀତି ଅଧିକାଂଶ ଆଦିମ ଅନାର୍ଯ୍ୟମାନଙ୍କ ତୁଲ୍ୟ ଅଟେ । କେତେକ ବିଷୟ ସେମାନେ ହିନ୍ଦୁମାନଙ୍କଠାରୁ ଅନୁକରଣ କରିଅଛନ୍ତି ।

ଦେବତାମାନଙ୍କ ମଧ୍ୟରେ ନିମ୍ନୋକ୍ତ ଦଶଟି ପ୍ରଧାନ ଯଥା—୧—ବୋଧିମ, ୨—ଦିହାରି, ୩—ବଡ଼ୋଦି ପାଟ, ୪—ଧେନୁ ପାଟ, ୫—ବୈତରଣୀ ପାଟ, ୬—ଲକ୍ଷ୍ମୀ ପାଟ

୭—ମଣ୍ଡଲ ପାଟ, ୮— ମହାଠାକୁରାଣୀ, ୯—ପହାଡ଼ଖାଲ ବାଡ଼ିଆ ଏବଂ ୧୦—ଚିଥ୍ରିକ ପାଟ । ଏମାନେ ଜଙ୍ଗଲ ଏବଂ ଗ୍ରାମରେ ବାସ କରନ୍ତି ବୋଲି ସେମାନଙ୍କର ବିଶ୍ୱାସ ।

ସେମାନେ ସର୍ବପ୍ରଥମେ ପୃଥ୍ୱୀଦେବୀର ପୂଜା କରନ୍ତି । ତାହା ପରେ ତାଙ୍କର ପୁତ୍ର ବାଘଦେବତା ଓ ଶସ୍ୟ ଦେବତାଙ୍କୁ ସ୍ଥାନ ଦିଅନ୍ତି । ଦ୍ୱିତୀୟରେ ଗ୍ରାମଦେବତା, ଜଳଦେବତା, ଅରଣ୍ୟଦେବତା, ବାୟୁଦେବତା ଓ ବୃଷ୍ଟିଦେବତାମାନେ ସ୍ଥାନ ପାଆନ୍ତି । ଏମାନଙ୍କ ସଙ୍ଗେ ପାରିଧିଦେବତା ମଧ୍ୟ ପୂଜା ପାଆନ୍ତି । ଗ୍ରାମର ଦେହୁରିଦ୍ୱାରା ପ୍ରତ୍ୟେକ ଘରେ ସେମାନଙ୍କର ପିତୃ-ଦେବତା ସ୍ଥାପିତ ହୁଅନ୍ତି । ବଡ଼ ବଡ଼ ଶାଳଗଛ ତଳେ ଉପରୋକ୍ତ ଦେବତାମାନଙ୍କର ନିଦର୍ଶନରୂପେ ପଥରଖଣ୍ଡେ କିମ୍ବା କାଠର ମୂର୍ତ୍ତିଟିଏ ରଖା ହୋଇ ସିନ୍ଦୂରଦ୍ୱାରା ଚର୍ଚ୍ଚିତ ହୋଇ ରହା ହୋଇଥାଏ । ସେମାନଙ୍କର ଦେବତାମାନଙ୍କ ମଧ୍ୟରୁ କେତେକ ଅନ୍ୟସ୍ଥାନରୁ ଆନୀତ ହେଲେ ମଧ୍ୟ ନିଜ ଜାତିପ୍ର ଦେହୁରି ସେମାନଙ୍କୁ ପୂଜା କରେ । ଦେହୁରିମାନେ ପୁରୁଷାନୁକ୍ରମେ ଗ୍ରାମର ପୌରୋହିତ୍ୟ ଓ ଦେବତାପୂଜା କରନ୍ତି ସେମାନଙ୍କ ବଂଶ ମଧ୍ୟରେ ସମସ୍ତେ ଦେହୁରି ସଞ୍ଜ୍ଞା ଧାରଣ କରନ୍ତି, ମାତ୍ର ଯେଉଁମାନେ ଉପଯୁକ୍ତ ବିବେଚିତ ହୁଅନ୍ତି, ସେମାନେ ପୂଜକ ହୁଅନ୍ତି । ପୂଜକ ଦେହୁରି ଆପଣା ସମ୍ପ୍ରଦାୟର ଯେ କୌଣସି ଭୂୟାଁର କନ୍ୟାକୁ ବିବାହ କରି ପାରେ ଏବଂ ଆପଣା ଇଚ୍ଛାନୁସାରେ ଦେହୁରି କାର୍ଯ୍ୟ ଛାଡ଼ି ଦେଇ ଥାଏ ।

ବ୍ୟାଘ୍ରଚର୍ମ ଓ ହରିଣଙ୍କର ମାଟି ଏକତ୍ର ଧରି ଦଳସ୍ପ ବା ଶପଥ କରାଯାଏ । କୌଣସି ବିଷୟ ପ୍ରମାଣ କରିବାକୁ ହେଲେ ଏହା ଶେଷ ଉପାୟ ଅଟେ । ଏପ୍ରକାର ଶପଥରେ କେହି କିଛି ଗୋପନ କରି ପାରେ ନାହିଁ । ପ୍ରକୃତ ସତ୍ୟ କହିବାକୁ ବାଧ୍ୟ ହୁଏ, କାରଣ ଉକ୍ତ ଚର୍ମ ଧରି ମିଛ କହିଲେ ଅଳ୍ପଦିନ ମଧ୍ୟରେ ବାଘ ମୁହଁରେ ପଡିବାକୁ ହୁଏ ବୋଲି ସେମାନଙ୍କର ଦୃଢ଼ ବିଶ୍ୱାସ । ଜଳ ଓ ଅଗ୍ନି ପରୀକ୍ଷା ଦ୍ୱାରା ଯେ ନିଷ୍ପତ୍ତି ହୁଏ, ତାହା ଶେଷ ବିବେଚିତ ହୁଏ । ଫୁଟିଥିବା ଗୋବରପାଣି ହାଣ୍ଡିରେ ହାତ ବୁଡ଼ାଇ ଗୋଟିଏ ତାମ୍ର ମୁଦ୍ରା ଯେ ବାହାର କରି ଆଣି ପାରେ ଅଥଚ ତାହାର ହାତ ଫୋଟକା ନ ହୁଏ, ସେ ନିର୍ଦ୍ଦୋଷ ବୋଲି ବିଶ୍ୱାସ କରାଯାଏ । କିମ୍ବା ଦୋଷୀ ଏକହାତ ଅନ୍ତରରେ ଲାଗିଥିବା ବାରଗୋଡ଼ବିଶିଷ୍ଟ ଓ ତେରଖଣ୍ଡ ହୋଇ ଧରାହୋଇ-ଥିବା ନିଶୁଣି ଉପରେ ଉଠି ଉପରୁ ତଳେ ଖୋଲା ହୋଇ ଥିବା ଗୋଲାକୃତି ଗାତ ମଧ୍ୟରେ କ୍ଷିର ଢ଼ାଳି ଦେଇ ପାରିଲେ ନିର୍ଦ୍ଦୋଷ ପ୍ରମାଣିତ ହୁଏ । ଉକ୍ତ ଗର୍ତ୍ତି ପୂର୍ବରୁ ପ୍ରତିଷ୍ଠା ହୋଇ-ଥାଏ । ସର୍ବୋପରି ଭୟାନକ ପରୀକ୍ଷା ଏହି ଯେ, ପ୍ରତ୍ୟେକ ହାତ ପାପୁଲିରେ ସାତଗୋଟି ଲେଖାଏ ଅଶ୍ୱତ୍ଥପତ୍ର ରଖି ମଧ୍ୟରେ ଅଧସେର ଓଜନର ଉତପ୍ତ ରକ୍ତବର୍ଣ୍ଣ ଖଣ୍ଡେ ଲୁହା ଧରି ଖଣ୍ଡେ ଲଇଁ ଉପରେ ସାତବେଢ଼ ବୁଲିଗଲେ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହୁଏ । ଯେ ନ ପାରେ ସେ ଗ୍ରାମରୁ ବହିଷ୍କୃତ ହୋଇ ତିନି କିମ୍ବା ଚାରି ମାଇଲ ଦୂରରେ ପୃଥକ୍ ହୋଇ ଘର କରି ରହେ । କିମ୍ବା ତାହାର କଳଙ୍କ ଲୁପ୍ତ ହେବା ଆଶାରେ ଅନ୍ୟ ଜିଲ୍ଲାରେ ଯାଇ ବାସ କରେ । ସେମାନଙ୍କ ଧର୍ମ

ବନ୍ଧନ ଅତି କଠୋର ଏବଂ ସେମାନେ ସେ ପ୍ରଥାର ବଶବର୍ତ୍ତୀ ହୋଇ ଚଳିବାକୁ ବାଧ୍ୟ ଅଟନ୍ତି ।

ଗ୍ରାମଦେବତାମାନଙ୍କର ପୂଜାପ୍ରଣାଳୀ ଅବଲୋକନ କଲେ ପରମାର୍ଥିମାନଙ୍କର ହୃତ୍କମ୍ପ ଜାତ ହେବ । ସେମାନଙ୍କ ମଧ୍ୟରୁ କେହି ଭକ୍ତ ପୂଜା କାର୍ଯ୍ୟ ଯଥାବିଧି ସମ୍ପନ୍ନ ନ କଲେ ଘୃଣିତ ଓ ପତିତ ହୁଏ ।

ସ୍କଟ୍‌ଲଣ୍ଡ ଦେଶରେ ଫେୟାର କ୍ରସ୍ * (Fairy Cross) ଦ୍ୱାରା ଅଳ୍ପସମୟ ମଧ୍ୟରେ ଯେପରି ଯୁଦ୍ଧାର୍ଥ ସୈନ୍ୟ ଏକତ୍ର କରାଯାଏ, ସେହିପରି ଭୂୟାଁମାନେ ଗୋଟିଏ ସ୍ୱତନ୍ତ୍ର ଉପାୟ ଦ୍ୱାରା ଉକ୍ତ କାର୍ଯ୍ୟ ସମ୍ପନ୍ନ କରନ୍ତି । ଜମ୍ପା କୌଣସି ବିଶେଷ କାର୍ଯ୍ୟ ଉପଲକ୍ଷରେ ସମସ୍ତ ଭୂୟାଁ ଦେଶର ଲୋକମାନେ ଏହିପରି ଏକତ୍ର ହୁଅନ୍ତି । ନିକଟବର୍ତ୍ତୀ ଭିନ୍ନ ଭିନ୍ନ ଗ୍ରାମରୁ କେତେକ ଜଣ ପ୍ରତିନିଧି ଏକତ୍ର ହେଲେ ତାହାକୁ ମହାଦେଶ ବୋଲିଯାଏ । ଉକ୍ତ ମହାଦେଶ ପ୍ରଥମେ ଦେହୁରି ଦ୍ୱାରା ପବିତ୍ର କରାଯାଏ । ପରେ ପିଅତ ଲଇ ଅଣାଯାଇ ଗୋଟିଏ ସରୁ ଦଉଡ଼ି ବନ୍ଧା ହୁଏ, ପ୍ରଥମେ ମହାଠାକୁରାଣୀ, ଦ୍ୱିତୀୟରେ ମହାରାଜା ଏବଂ ତୃତୀୟରେ

---

* ସ୍କଟ୍‌ଲଣ୍ଡରେ ବିଦ୍ରୋହ ଉପସ୍ଥିତ ହେଲେ ଦେଶର ସମସ୍ତ ଲୋକ ଅସ୍ତ୍ରଶସ୍ତ୍ର ସହ ଶୀଘ୍ର ଏକତ୍ର ହେବାପାଇଁ ଦୁଇ ଖଣ୍ଡ କାଷ୍ଠ କ୍ରୁଶବର୍ଣ୍ଣ କରାଯାଇ ଓ ରକ୍ତଦ୍ୱାରା ରଞ୍ଜିତ ହୋଇ ଗ୍ରାମେ ଗ୍ରାମେ ବୁଲିଯାଏ । ଏହା ଆହ୍ୱାନର ଚିହ୍ନ ବୋଲି ସମସ୍ତେ ଜାଣି ଅଚିରେ ଏକତ୍ର ହୁଅନ୍ତି ।

ମହାଦେବୀଙ୍କ ନାମରେ ତିନଗୋଟି ଗଣ୍ଠି ପଡ଼େ, ଆଉ ମଧ୍ୟ ଯେତେଦିନ ମଧ୍ୟରେ ଏକନ୍ଦ ଦେବାକୁ ହେବ ସେତିକଗୋଟି ଶ୍ରେଷ୍ଠ ଶ୍ରେଷ୍ଠ ଗଣ୍ଠି ଦିଆଯାଇ ଅଗ୍ନାନର ନିଦର୍ଶନସ୍ୱରୂପ ତାହା ଅନ୍ୟ ଗ୍ରାମକୁ ନେଇ ଯିବାପାଇଁ ଗୋଟିଏ ବ୍ୟକ୍ତିକୁ ଦିଆଯାଏ । ସେ ତାହା ନେଇ ନିକଟବର୍ତ୍ତୀ ଗ୍ରାମରେ ପହଞ୍ଚି ପ୍ରଥମେ ଯେଉଁ ଲୋକକୁ ଦେଖେ ତାହାକୁ ଦିଏ । ସେ ପାଇଲା ମାତ୍ରକେ ଦ୍ରୁତବେଗରେ ତାହା ଅନ୍ୟ ଗ୍ରାମକୁ ନେଇଯାଏ । ଏହିପରି କେତେକ ଘଣ୍ଟା ମଧ୍ୟରେ ତାହା ସମସ୍ତ ଭୂୟାଁଗ୍ରାମମାନଙ୍କର ଦୂରତା ଦୃଷ୍ଟିରେ ଏକରୁ ଅଧିକ ଉକ୍ତ ପ୍ରକାର ଗଣ୍ଠିଯୁକ୍ତ ସିଆଳି ଦଉଡ଼ି ଏକସମୟରେ ବିଭିନ୍ନ ଦିଗକୁ ପଠାଯାଏ ।

ଦଶହରା କମ୍ବା ରଥଯାତ୍ରା ପ୍ରଭୃତି ହିନ୍ଦୁମାନଙ୍କ ଧର୍ମୋତ୍ସବରେ ଭୂୟାଁମାନେ ଆମୋଦପ୍ରମୋଦପାଇଁ ଯାହା ଦେଖିବା ଅଭିପ୍ରାୟରେ ଆସନ୍ତି । କନ୍ତୁ ଧର୍ମଗତ ଭାବ ସେମାନଙ୍କ ହୃଦୟରେ ନ ଥାଏ ।

ହିନ୍ଦୁମାନଙ୍କ ଉତ୍ସବର ରୀତିନୀତିରୁ ସମ୍ପୂର୍ଣ୍ଣ ପୃଥକ୍‌ରୂପେ ସେମାନଙ୍କର ଦୁଇଗୋଟି ଉତ୍ସବ ଅତି ଧର୍ମଗତଭାବରେ ଓ ଆଡ଼ମ୍ବର ସହକାରେ ସମ୍ପାଦିତ ହୁଏ । ପ୍ରଥମଟି ମାଘମାସ ମଧ୍ୟରେ ଯେ କୌଣସି ଦିନ ଗୋଟିଏ ଗ୍ରାମରେ ମାଘପୋଡ଼ି ଉତ୍ସବ ହୁଏ । ଏକଦିନରେ ସମସ୍ତଗ୍ରାମରେ ଉତ୍ସବ ନ ହେବାର ଅଭିପ୍ରାୟ, ଏହି ଯେ ଏକଗ୍ରାମର ଲୋକ ଅନ୍ୟ ଗ୍ରାମର ଉତ୍ସବରେ ଯୋଗଦେଇ ପାରିବେ ନାହିଁ ।

ଏ ଉତ୍ସବରେ ଭୂୟାଁମାନେ ବ୍ୟଭିଚାର ଓ ମଦ୍ୟପାନର ଅତି-ମାତ୍ରା ପ୍ରଶ୍ରୟ ଦିଅନ୍ତି । ଦେବତାଙ୍କ ତୃପ୍ତିପାଇଁ ଅଶ୍ଳୀଳ ଭାଷାରେ ପରିହାସବ୍ୟଞ୍ଜକ ଗାନ ଆବଶ୍ୟକ ବୋଲି ମନେ କରାଯାଏ । ପୁଣି ସେମାନେ କର୍ଦ୍ଦମାଦି ନାନାପ୍ରକାର କଦର୍ଯ୍ୟ ପଦାର୍ଥରେ ଲିପ୍ତ ଚିତ୍ରିତ ହୋଇ ଅତି କଦାକାର ବେଶ ଧାରଣ କରନ୍ତି । ଯୁବାମାନେ ମଦ୍ୟପାନ ନ କଲେ ମଧ୍ୟ ଉକ୍ତପ୍ରକାର କଦାକାର ବେଶ ଧାରଣ କରି ଅଶ୍ଳୀଳ ଗାନରେ ଯୋଗ ଦିଅନ୍ତି । ଧାଙ୍ଗିଡ଼ୀମାନେ (ଅବିବାହିତା ଯୁବତୀ) ଅଧିକାଂଶ ସମୟ ଏଥିରେ ଲିପ୍ତ ହୁଅନ୍ତି । ଏହି ଉତ୍ସବ ତିନିଦିନ କରାଯାଏ, ଏହି ତିନିଦିନ ମଧ୍ୟରେ ଜାତିସମ୍ପର୍କୀୟ କିମ୍ବା ସ୍ୱାମୀ ସ୍ତ୍ରୀ ମଧ୍ୟରେ ଲଜ୍ଜା କିମ୍ବା ସମ୍ମାନ ରହେ ନାହିଁ । ଭାଇ ଭଉଣୀ ମଧ୍ୟରେ ଅଶ୍ଳୀଳ ଭାଷାରେ ପରିହାସବ୍ୟଞ୍ଜକ କଥାବାର୍ତ୍ତା ହୁଅନ୍ତି ।

ଫସଲ ଅମଳ ଶେଷରେ "କରମା" ଉତ୍ସବ ହୁଏ । ଏଥିରେ ମଧ୍ୟ ବ୍ୟଭିଚାର, ମଦ୍ୟପାନ ଓ ଅଶ୍ଳୀଳ ଗାନ ପୂର୍ବ ପରି ହୁଏ । ଯେଉଁ ଫସଲ ଅମଳ ହେଲା ତାହା ସେମାନଙ୍କର ନିର୍ବିଘ୍ନ ପାଇଁ ସେମାନେ ଏ ଉତ୍ସବ କରିଥାନ୍ତି । କରମା ନାମକ ଗଛର ଡାଳ ଦୁଇଖଣ୍ଡି ରାଜା ଓ ରାଣୀ ନାମରେ ଏକାଠି ଭୂମିରେ ପୋତି ସେମାନଙ୍କର ପରସ୍ପରର ବିବାହ ଉତ୍ସବ ସମ୍ପାଦନ କରନ୍ତି । ସାପ ଓ ପକ୍ଷୀ ଧରା ହୋଇ ଅଣାଯାଏ । ସାପମାନଙ୍କ ଦୁଇପାଟି ଫୋଡ଼ା ହୋଇ ସିଲାଇ କରାହୁଏ, ଯେପରି ସେମାନେ କାମୁଡ଼ି ପାରିବେ ନାହିଁ । ଏହା ପରେ ସେମାନଙ୍କୁ ସ୍ତ୍ରୀମାନଙ୍କ ମଧ୍ୟକୁ ଛାଡ଼ି ଦିଆଯାଏ । ପକ୍ଷୀମାନଙ୍କୁ

ଡ଼ାଲମାନଙ୍କରେ ବାନ୍ଧ କାଣ୍ଡ ଏବଂ ପଥର ମାରି ବଧ କରା-ଯାଏ । ଏ ଦୁଇଗୋଟି ଉତ୍ସବ ଛଡ଼ା ହିନ୍ଦୁମାନଙ୍କଠାରୁ ଗୃହୀତ ଗଙ୍ଗାପୂର୍ଣ୍ଣିମା ଉତ୍ସବ ମଧ୍ୟ କରନ୍ତି । ଏଥିରେ ମଧ୍ୟ ପୂର୍ବପରି ଅତ୍ୟନ୍ତ ଓ [illegible]ଙ୍କୋଳ ଦୃଶ୍ୟମାନଙ୍କର ଅଭିନୟ ହୁଏ । ହିନ୍ଦୁ-ମାନଙ୍କ ପରି ସେମାନଙ୍କର କୌଣସି ଉତ୍ସବର ନିର୍ଦ୍ଦିଷ୍ଟ ଦିନ ନାହିଁ । ଯେଉଁଦିନ ସୁବିଧା ମନେ କରନ୍ତି ସେହିଦିନଠାରୁ ଉତ୍ସବ ଆରମ୍ଭ କରନ୍ତି, ମାତ୍ର ଯେଉଁ ଉତ୍ସବ ଯେତେଦିନ ହେବ ତାହା ନିର୍ଦ୍ଦିଷ୍ଟ ଥାଏ ।

ଏହିସବୁ ଉତ୍ସବମାନଙ୍କରେ ଭୋଜି ସଙ୍ଗେ ସଙ୍ଗେ ମଦ୍ୟ-ପାନ ଓ ନୃତ୍ୟ ଯଥେଷ୍ଟ ପରିମାଣରେ ହୁଏ । ଅବିବାହିତ ଧାଙ୍ଗଡ଼ା ଓ ଧାଙ୍ଗଡ଼ୀମାନଙ୍କର ନାହାର ଯାହାକୁ ବିବାହ କରିବାର ଇଚ୍ଛା ଥାଏ, ସେ ଏହି ଉତ୍ସବ ସମୟରେ ପ୍ରକାଶ କରେ ।

ଶିକାର ଉତ୍ସବରେ ( ଓଡ଼ିଆ ପାରଧି ) ସମସ୍ତ ପୁରୁଷ ବ୍ୟକ୍ତି ଯୋଗଦେବାକୁ ବାଧ୍ୟ ହୁଅନ୍ତି । ଏହା ଦୁଇଦିନ କରାଯାଏ, ପ୍ରତ୍ୟେକ ଗ୍ରାମରେ ଆପଣାର ସ୍ୱତନ୍ତ୍ର ବାଦ୍ୟ ପାଇଁ ପାଣମାନଙ୍କୁ ରଖିଥାନ୍ତି ।

କୌଣସି ଜନ୍ତୁ ଶରବିଦ୍ଧ ହୋଇ ପଳାଇ ଗଲେ ସେମାନେ କ୍ଲାନ୍ତଭାବରେ ଯେତେ ଦୂର ହେଉ ପଛକେ ତାହାର ପାଦ ଚିହ୍ନାଦି ଅନୁସରଣ କରି ତଲ୍ଲି ତଲ୍ଲି ଶେଷରେ ଧରନ୍ତି । ପ୍ରତ୍ୟେକ ଶିକାର ଗ୍ରାମର ପ୍ରଧାନ ଘର ନିକଟକୁ ବୋହି ନିଆଯାଏ । ଯେଉଁ ଲୋକ ଜନ୍ତୁଟି ମାରିଥାଏ, ପ୍ରଧାନ ତାହାକୁ

ଖଣ୍ଡେ ଲୁଗା ପୁରସ୍କାର ଦିଏ । ଯେ ଯେପରି ଜନ୍ତୁ ମାରେ ତଦନୁଯାୟୀରେ ସେହିପରି ଲମ୍ବା ଓ ଚୌଡ଼ାର ଲୁଗା ପାଏ । ଗୋଟିଏ ବାଘ ମାରିଲେ ୧୨ ହାତ ଲମ୍ବା ଲୁଗା ମିଳେ । ସ୍ତ୍ରୀମାନେ ବଣ୍ୟ ଜନ୍ତୁର ପାଦ ହଳଦି ପାଣିରେ ଧୋଇ ଦିଅନ୍ତି । ତାହା ପରେ ଗ୍ରାମ ବାହାରକୁ ନେଇ କାଠି ଖଣ୍ଡେ (ପଞ୍ଚ ଗୋଡ଼ର ଗୋଟିଏ) ଶାନ୍ତି ଓ ଜମିଦାର ପ୍ରଧାନଙ୍କୁ ଦେଇ ଅବଶିଷ୍ଟ ଗ୍ରାମ ମଧ୍ୟରେ ବାଣ୍ଟି ଦିଅନ୍ତି । ଏକ ଗ୍ରାମର ଶିକାରୀଦ୍ୱାରା ଶିକାର ହୋଇଥିବା ଜନ୍ତୁ ଅନ୍ୟ ଗ୍ରାମରେ ମାଡ଼ି ଖାଇଲେ ଯଦି ସେମାନେ ତାକୁ ଗୋପନ କରନ୍ତି ଓ ଦୂର୍ବୃତ୍ତ ବାଣ୍ଟି ଥିଲା ତାହା ଜାଣି ପାରେ, ତେବେ ଦେଶ ମଧ୍ୟରେ ସଭା ହୋଇ ବିଚାର କରାଯାଏ ଏବଂ ଗୋପନକାରୀ ଦୋଷୀ ବୋଲି ପ୍ରମାଣିତ ହୁଅନ୍ତି ।

ରୋଗ ମାନେ ଦେବତାର ଆବେଶ ବୋଲି ଜ୍ଞାନ କରାଯାଏ ଏବଂ ଅତଏବ ସେ ଦେବତାଙ୍କୁ ବୋଧ କରିବାପାଇଁ ଔଷଧ ଅପ୍ରୟୋଜନ ହୁଏ । ରୋଗରେ ସେମାନେ ଔଷଧ ବ୍ୟବହାର କରନ୍ତି ନାହିଁ ।

ଗୋରୁଙ୍କୁ ସେମାନେ ହିନ୍ଦୁମାନଙ୍କ ପରି ପବିତ୍ରଭାବରେ ଦେଖନ୍ତି । ସେମାନଙ୍କ ମଧ୍ୟରୁ କେହି ଗୋହତ୍ୟା ବା ତାହା ପ୍ରତି ଅତ୍ୟାଚାର କଲେ ପତିତ ହୁଏ । ସେମାନେ ବଳଦ ସହ ଗାଈକୁ ହଳ କଲେ ମଧ୍ୟ ଆଦୌ ଗାଈକୁ ଦୁହନ୍ତି ନାହିଁ । କୌଣସି କୌଣସି ଭୂୟାଁ ଆଦୌ ଦୁଗ୍ଧପାନ କରନ୍ତି ନାହିଁ ।



# ପରିଶିଷ୍ଟ ।



ଭୂୟାଁମାନଙ୍କ ଅଶୃର ବ୍ୟବହାରରୁ କେତେକ ପରିମାଣରେ ଅନୁମାନ କରାଯାଏ ଯେ ସଭ୍ୟତାବୃଦ୍ଧି ସଙ୍ଗେ ସଙ୍ଗେ ଏ ଜାତି ଧ୍ୱଂସ ପ୍ରାପ୍ତ ହୋଇ ଯାଇ ପାରେ । ମାତ୍ର ସେ ସବୁ ବିଶଦଭାବରେ ହୃଦୟଙ୍ଗମ କଲେ ତାହା ଅସମ୍ଭବ ପରି ବୋଧ ହୁଏ ।..

ପୂର୍ବୋକ୍ତ ମତେ ଯେତେବେଳେ ସେମାନେ ଅପଣାର ସ୍ୱଚ୍ଛନ୍ଦ ରାଜା କରିବାକୁ ମୟୂରଭଞ୍ଜ ରାଜପୁତ୍ରଙ୍କୁ ଆଣି ରଖିଥିଲେ, ସେ ସମୟରେ ତାହାଙ୍କର ପରିଚର୍ଯ୍ୟା ପାଇଁ କେତେକ ଗୋପାଳ ଆଣି ଅପଣା ଦେଶ ମଧ୍ୟରେ ରଖାଇଥିଲେ । ସେହି ଗୋପାଳମାନେ କାଳକ୍ରମେ ଭୂୟାଁମାନଙ୍କ ସଙ୍ଗେ କେତେକ ବିଷୟରେ ମିଶି ଯାଉଅଛନ୍ତି । ସେମାନେ ଭୂୟାଁ ସ୍ତ୍ରୀ ଉପସ୍ତ୍ରୀ ରୂପେ ରଖନ୍ତି । ଏହାଦ୍ୱାରା ଯେଉଁ ସନ୍ତାନ ସନ୍ତତି ହୁଅନ୍ତି, ସେମାନେ ଭୂୟାଁ ବୋଲି ପରିଚିତ ହୁଅନ୍ତି ।

ଭୂୟାଁମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପ୍ରାପ୍ତ ହେବାରୁ ସେମାନେ ପାର୍ବତ୍ୟ ପ୍ରଦେଶ ଛାଡ଼ି ଥଳରେ ଅନ୍ୟାନ୍ୟ ଜାତିମାନଙ୍କ ସଙ୍ଗେ କ୍ରମଶଃ ବାସ କରୁଅଛନ୍ତି ।

ଭୂୟାଁମାନେ ଅନେକ ପ୍ରକାର ସଂଜ୍ଞା ଧାରଣ କରନ୍ତି । ସେମାନଙ୍କ ମଧ୍ୟରେ ଯେ ପ୍ରଧାନ, ସେ ନାୟକ ଉପାଧି ଧାରଣ

କରେ । ଅନେକ ବୈଦେଶିକ ଉପାଧି ସେମାନେ ଗ୍ରହଣ କରିଅଛନ୍ତି । ମାତ୍ର ବ୍ୟବହାର ଓ ଉଚ୍ଚାରଣ ଦୋଷରୁ ତାହା ଭିନ୍ନପ୍ରକାର ଶୁଣାଯାଏ । ଗୋପାଳମାନଙ୍କଠାରୁ ପ୍ରଧାନ, ପାଣମାନଙ୍କଠାରୁ ପାହାନ, ମହାନ୍ତିଙ୍କଠାରୁ ମାନ୍ତ୍ରି ପ୍ରଭୃତି ଉପାଧି ସେମାନଙ୍କ ମଧ୍ୟରୁ ଅନେକେ ପୁରୁଷାନୁକ୍ରମେ ଧାରଣ କରିଅଛନ୍ତି । ଆଉ ମଧ୍ୟ ରାଜାଙ୍କର କେତେକ କାର୍ଯ୍ୟ କରୁଥିବା ଅନୁସାରେ ଉପାଧି ପାଇଅଛନ୍ତି, ଯଥା କାର୍ଯୀ, କେହେରି, ମଲିକ ଓ ମନ୍ତ୍ରୀ ଇତ୍ୟାଦି । ଗୋପାଳ ପ୍ରଭୃତି ଜାତିମାନଙ୍କ ସଙ୍ଗେ ଅସବର୍ଣ୍ଣ ବିବାହୋତ୍ପନ୍ନ ସନ୍ତାନମାନଙ୍କ ଆକୃତି ଅନେକାଂଶରେ ଅଦିମ ଭୂୟାଁମାନଙ୍କଠାରୁ ପୃଥକ୍ ଏବଂ ଆର୍ଯ୍ୟମାନଙ୍କ ସଙ୍ଗେ ଚେହାରର ସାମଞ୍ଜସ୍ୟ ଦେଖାଯାଏ । ଯେଉଁ ଜାତିରେ ଅସବର୍ଣ୍ଣ ବିବାହ ପ୍ରଥା ପ୍ରଚଳିତ ଅଛି, ସେ ଜାତି କ୍ରମଶଃ ବର୍ଦ୍ଧିତ ନ ହୋଇ ହ୍ରାସ ପ୍ରାପ୍ତ ହେବା ସମ୍ଭବପର ନୁହେ ।

ଯେବେ ଗୋଟିଏ ସନ୍ତାନ ଜନ୍ମେ, ସେ ଦିନ ଗ୍ରାମରେ ଗୋଟିଏ ସାମାନ୍ୟ ଘଟନା ଘଟିଲେ, ସେ ଘଟନାକୁ ଲକ୍ଷ୍ୟ କରି ଶିଶୁର ନାମକରଣ ହୁଏ । ଘଟନାକ୍ରମେ ସେ ଦିନ ଯଦି ସାହେବ ଜଣେ ଗ୍ରାମରେ ଥାଏ, ତେବେ ଶିଶୁର ନାମ ସାହେବ ବା ଗୋରା ଦିଆଯାଏ, ଅଥବା ଯଦି ଜଣେ ମୁସଲମାନ, ସିପାହି, ମହାଜନ ବା ପୁଲିଶ ଗ୍ରାମରେ ଥାଏ, ତେବେ ପିଲାର ନାମ ପଠାଣ, ସିପାଇ, ମହାଜନ ବା ପୁଲିସ୍ ଦିଆଯାଏ । ଆଉ ମଧ୍ୟ କୌଣସି ଉତ୍ସବ ଦିନ କେହି ଜନ୍ମହେଲେ ସେହି

ପୂର୍ବପୁରୁଷର ନାମ ଅନୁସାରେ ଉକ୍ତ ପିଲାର ନାମ ହେବ, ଯଥା— ରଙ୍କ, ଦଶରଥ, ସୂନାଥ ଇତ୍ୟାଦି ।

ଭୂୟାଁମାନେ ଅନାର୍ଯ୍ୟ ଜାତିର ପ୍ରାଥମିକ ଅବସ୍ଥା ତ୍ୟାଗ କରିଅଛନ୍ତି । ଯଦିଚ ସେମାନେ ବର୍ତ୍ତମାନ ମୃଗୟା ପାରଧିର ଅତି ପ୍ରିୟ, ତଥାପି ସେମାନେ କେବଳ ଏହା ଉପରେ ଆପଣାର ଗ୍ରାସାଚ୍ଛାଦନ ପାଇଁ ନିର୍ଭର କରନ୍ତି ନାହିଁ । ସେମାନଙ୍କ ମଧ୍ୟରୁ କେତେକ ଭ୍ରମଣଶୀଳ କୃଷିଜୀବୀ ଓ ଅବଶିଷ୍ଟ ସ୍ଥାୟୀ କୃଷକରୂପେ ବାସ କରୁଅଛନ୍ତି । ମାତ୍ର ସେମାନେ ଏପର୍ଯ୍ୟନ୍ତ ଅନ୍ୟାନ୍ୟ ଅନାର୍ଯ୍ୟ ଜାତିମାନଙ୍କ ପରି କୃଷି କରୁଅଛନ୍ତି । ସେମାନଙ୍କ ଚତୁର୍ଦ୍ଦିଗରେ ଯଥେଷ୍ଟ ଭୂମି ରହିଅଛି । ଏଣୁ ସେମାନେ ଇଚ୍ଛାମତେ ଏକ ସ୍ଥାନରୁ ଯାଇ ଅପର ସ୍ଥାନରେ ଜଙ୍ଗଲ କାଟି ଚାଷ କରନ୍ତି । କାରଣ ସେମାନେ ଏପର୍ଯ୍ୟନ୍ତ ଉନ୍ନତ ରୀତିରେ କୃଷି କରିବାକୁ ସମର୍ଥ ହୋଇ ନାହାନ୍ତି । ସେମାନେ ଅତି ଅଳ୍ପ ପରିମାଣରେ ଶସ୍ୟ ଅମଳ କରନ୍ତି । ମାତ୍ର ସେମାନେ ବାସକରୁଥିବା ଜଙ୍ଗଲରେ ପ୍ରଚୁର ପରିମାଣରେ ଫଳ, ମୂଳ, ମିଳିବାରୁ ଖାଦ୍ୟାଭାବ ହୁଏ ନାହିଁ ।

ଗ୍ରାମମାନଙ୍କରେ ଲୋକବସତି ଅତି ଅଳ୍ପ । ଭୂୟାଁମାନଙ୍କର ବେଶି ସନ୍ତାନ ସନ୍ତତି ହୁଅନ୍ତି ନାହିଁ । ଯେତେ ହୁଅନ୍ତି, ସେମାନେ ସମସ୍ତେ ହୃଷ୍ଟପୁଷ୍ଟ ହୁଅନ୍ତି ।

ପ୍ରତ୍ୟେକ ଭୂୟାଁ ନିଜର ଗୃହ ନିଜେ ନିର୍ମାଣ କରେ ଓ ନିଜର ପଶୁ ନିଜେ ଚରାଏ । ଜମି ଗୃହ ମଧ୍ୟ ନିଜେ ନିଜେ

କରନ୍ତି । କୌଣସି ବିଷୟରେ ସେମାନେ ପର ଉପରେ ନିର୍ଭର କରନ୍ତି ନାହିଁ ।

ବର୍ତ୍ତମାନ ପ୍ରଚଳିତ କର ଅପେକ୍ଷା ଅନ୍ୟପ୍ରକାର ସୁବିଧା-ଜନକ କର ଧାର୍ଯ୍ୟ କରିବା ସହଜ ନୁହେ । ବରଂ ଟଙ୍କା ଆଦାୟ ଅପେକ୍ଷା ବେଠି କମ୍ବା ଜିନିସ ପ୍ରଭୃତି ଆଦାୟରେ ସେମାନେ ଅଧିକ ସନ୍ତୁଷ୍ଟ । ସେମାନଙ୍କୁ କୌଣସି ନିୟମରେ ଆବଦ୍ଧ କରିବା ଅପେକ୍ଷା ସେମାନଙ୍କ ସଙ୍ଗେ ପରାମର୍ଶ କରି କୌଣସି କାର୍ଯ୍ୟ କରିବା ସୁବିଧାଜନକ ଅଟେ । ବର୍ତ୍ତମାନ ସେମାନଙ୍କୁ ଉନ୍ନତ ଭାବରେ କୃଷି କାର୍ଯ୍ୟ ଓ ସେମାନଙ୍କ ଗ୍ରାମର ଲୋକସଂଖ୍ୟା (ଅନ୍ୟାନ୍ୟ ଉନ୍ନତ ଜାତି ବାସ କରାଇ) ବୃଦ୍ଧି କରିବା ବିଷୟରେ ଶିକ୍ଷା ଦେବା ଆବଶ୍ୟକ । ସେମାନଙ୍କର ଭଦ୍ରତା, ସତ୍ୟବାଦିତା ଓ ଆପଣା ଆପଣା ମଧ୍ୟରେ ସରଳ ବ୍ୟବହାର ଆଶ୍ଚର୍ଯ୍ୟଜନକ ଅଟେ । ସେମାନେ ନିଜ ନିଜ ଜମିର ନିଜେ ପ୍ରଭୁ ବୋଲି ଜାଣନ୍ତି ।

ଗ୍ରାମରେ ଯେଉଁ ଶସ୍ୟ ଅମଳ କରାଯାଏ, ତାହା ଅବାଧରେ ଲୋକରେ ମାଠ ଓ ନିଜ କୋଠିରେ କିନା ଗୃହରେ ରଖାଯାଏ । କାରଣ ଚୋରି କରିବା ଲୋକ ଭୂୟାଁ ଗ୍ରାମରେ ନ ଥାଏ । ସେମାନେ ପରଦ୍ରବ୍ୟ ଅପହରଣ କରିବା ବିଷୟରେ ଅତି ଭୀତ ଅଟନ୍ତି ।

ଯଦିଓ ନିସ୍ସବାଦରେ ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ବ୍ୟଭିଚାରାଦି ଦେଖାଯାଏ, ତଥାପି ସେମାନେ ସ୍ତ୍ରୀମାନଙ୍କୁ ସମ୍ମାନ କରନ୍ତି ଓ ଘରେ କନ୍ୟା ଓ ପୁତ୍ରମାନଙ୍କର ଚରିତ୍ର ପ୍ରତି ବିଶେଷ ଦୃଷ୍ଟି

ଦଅନ୍ତି । ଗ୍ରାମରେ ଅବିବାହିତ ପୁତ୍ର ଓ ଅବିବାହିତା କନ୍ୟା-ମାନେ ପୃଥକ୍ ପୃଥକ୍ ଶୟନ କରନ୍ତି । ଆପଣା ଘରେ କୌଣସି ଅପବାଦ ଦେବାକୁ ସେମାନେ ବଡ଼ ଭୟ ଓ ଲଜ୍ଜା ବୋଧ କରନ୍ତି ।

ଈଶ୍ୱରଙ୍କ ବିଷୟରେ ଭୂୟାଁମାନଙ୍କ ଜ୍ଞାନ ଅତି ସାମାନ୍ୟ । ଯଦିଓ ସେମାନେ ତାହାଙ୍କର ଅସ୍ତିତ୍ୱ ଓ ମାନବର ଜନ୍ମାନ୍ତର ବିଶ୍ୱାସ କରନ୍ତି, ଏତିକି ସେମାନେ ହିନ୍ଦୁମାନଙ୍କଠାରୁ ଗ୍ରହଣ କରିଅଛନ୍ତି । ଜନ୍ମୋତ୍ସବ, ଶ୍ରାଦ୍ଧ ଓ ବିବାହ ଅନୁଷ୍ଠାନ ଅତି-ଭକ୍ତିର ସହିତ ସେମାନେ ସାଧନ କରନ୍ତି ।




Printed by V Kar. U. S. Press, Cuttack.